*  *  *  *

ଦ୍ୱିତୀୟ ସଂସ୍କରଣ—୧୯୫୯

ପ୍ରକାଶକ
ଅଳକା ପ୍ରକାଶନୀ
କଟକ—୩

*

ପ୍ରାପ୍ତିସ୍ଥାନ
ପ୍ରକାଶ ବୁକ୍ ଷ୍ଟୋର
କଲେଜ ରୋଡ଼, କଟକ—୩

*

କଥାବସ୍ତୁ ମୁଦ୍ରଣ
ଶ୍ରୀ ପ୍ରସନ୍ନ କିଶୋର ଦାସ
କୃଷକ ପ୍ରେସ, କଟକ—୧

*

ପ୍ରଚ୍ଛଦପଟ୍ଟ ରୂପକାର
ଶ୍ରୀ ଗୋପାଳ କାନୁନଗୋ

*  *  *  *

ମୂଲ୍ୟ—ଦୁଇଟଙ୍କା ମାତ୍ର

ତୁମ କଥା ଯେବେ କହିଲ ବନ୍ଧୁ

ମୋ କଥା କହିବା ନୁହେଁ ତ ?

ଜୀବନର ଶତ ମିଳନ ଛନ୍ଦେ

କରୁଣ ମଧୁର ହୁହେଁ ତ ।

ଶ୍ରୀ ଅଶୋକ ସାହୁ

## ✽ ଏକ ✽

ପ୍ରାଣର.........

ମୋତେ ଭୁଲ ବୁଝିବେନି ସତରେ ! କଣ କରିବି ? ଶତ ଚେଷ୍ଟା କରି ସୁଦ୍ଧା ନିଜର ଅକ୍ଷମତାକୁ ଲୁଚାଇ ପାରିଲି ନାହିଁ । ଭିତରର ମଣିଷ ବାହାର ମଣିଷକୁ ଧାପଡ଼ ମାରି ଆତ୍ମପ୍ରକାଶ କରିବାକୁ ବସିଛି । ମୁଁ ଆଉ ସହି ପାରୁନାହିଁ । ଅନ୍ତର ମୋର ଭାଙ୍ଗି ପଡ଼ୁଛି ।

ମୋତେ ଫାନ୍ଦିଲୁ କାହିଁକି ଟିକିଏ ବସ ଅବା ନ ଦେଲେ ? ପ୍ରେମ ଏକ ମୁହୂର୍ତ୍ତର ଈଷତ୍ ଯନ୍ତ୍ରଣା ସାରା ଜୀବନର ଜ୍ୱାଳାଯନ୍ତ୍ରଣା ଅବଶୋଷ ତୁଳନାରେ କେତେ ଉଚ୍ଚ ଆଉ ମହତ୍, ଭାବି ପାରିଲେ ନାହିଁ ଆପଣ, ମୁଁ କଣ କରିବି ? ମନର ନିଭୃତ ଅନୁଭୂତିକୁ ଆପଣଙ୍କ ଆଗରେ ରୂପ ଦେବା ପାଇଁ ଯେବେ ମୋର ସ୍ୱାଧୀନତା ନ ଥାଏ, ତା'ହେଲେ ଏପରି ପରାଧୀନ ଜୀବନର ଶୀଘ୍ର ଯବନିକା ପଡ଼ିଯାଉ ।

ମୁଁ କଣ ଲେଖି ପାରୁ ନାହିଁ । ସୁଜାତା ନତମସ୍ତକରେ ଜୀବନର ଶ୍ରେଷ୍ଠତମ ଅର୍ଘ୍ୟ ବାଢ଼ି ଦେଇଛି, ଜାଣେନା, ଦେବତା ତାର ଅର୍ଘ୍ୟ ସାଦରେ ଗ୍ରହଣ କରିବ କି ନାଁ ?

ଇତି ।

ଥରେ, ଦୁଇଥର, ତିନିଥର, ଚାରିଥର ପଢ଼ିଗଲା । ପୁଣିଥରେ ପଢ଼ିବାକୁ ଇଚ୍ଛାହେଲା, ପଢ଼ିଲା । ସୁଜାତାର ତଥାପି ମନ ମାନିଲା ନାହିଁ । ପ୍ରଥମ ଚିଠି ଖଣ୍ଡିକ କାହାକୁ ଦେଖାନ୍ତା । କିଏ ଠିକେ ଭଲ ଭାବରେ ମନମାଫିକେ ଲେଖି ଦିଅନ୍ତା···କିନ୍ତୁ ଦେଖାଇବ କାହାକୁ ? କିଏ ବା' ତାର ନିଜର ଅଛି ?

ସେଥିପାଇଁ ନିଃସହାୟା ସୁଜାତା କେତେଥର କାଗଜ କଲମ ଧରେ, ଚିଠି ଲେଖି ଆସେ ନି । ଦୁଇଧାଡ଼ି କଣ ଲେଖେ, ତାକୁ ଚୋପାଡ଼ି ଦିଏ, ପୁଣି ଲେଖି ବସେ···ଶେଷ ଚିଠିଟି ଲେଖିବା ଆଗରୁ ଆଉ ଖଣ୍ଡେ ଚିଠି ସେ ଏପରି ଲେଖିଥିଲା । ସେଥିରେ ତାର ମନ ମାନିଲା ନାହିଁ । ବହି ଭିତରେ ଥୋଇ ଦେଇ ସେ ପୁଣି ଲେଖିଲା ।

ବହୁତ ଚେଷ୍ଟାପରେ ତାର ସାଧନା ଫଳବତୀ ହୋଇଛି । ସାହସ ଓ ହୃଦୟର ଅନୁଭୂତିକୁ ସେ ଚିଠି ଆକାରରେ ଲେଖି ଲଖିଚ । ରୂପହୀନ ଅଭିବ୍ୟକ୍ତି ଗୁଡ଼ିକ ତାର ଗ୍ଲେଟ କଲମରେ ରୂପାୟିତ ହୋଇ ଉଠିଛନ୍ତି ।

ରବିବାର-ନଷ୍ଟେନ୍ତ ଦିନଟିଏ । ଖରାବେଳ ହେବ, ଅତି ଗୋପନରେ ସୁଜାତାର ଚିଠି ଲେଖା ଚାଲିଛି । କେହି ଦେଖି ପାରିବେ ନାହିଁ, ଜାଣି ପାରିବେ ନାହିଁ । ସେ ଚିଠି ପଠାଇବ । ଏପରି ଚିଠି କଣ ସତରେ ଭୁବନବାବୁଙ୍କ ମନକୁ ଆଣିବ ? ସେ ଉଚ୍ଚ ଶିକ୍ଷିତ ମାର୍ଜିତ ରୁଚିର ତରୁଣ । ଆଶଙ୍କାରେ ହୃଦୟ ଉଦ୍‌ବେଳିତ ହୋଇ

ଉଠିଲା । ଆନନ୍ଦର ଆଶାରେ ମଧ୍ୟ ମନ ପ୍ରାଣ ପୁଲକିତ ହୋଇ ଉଠିଲା ।

ଲଫାପା ଉପରେ ଠିକଣା ଲେଖିଲା ବେଳେ ତାର କଲମ ଥରି ଉଠିଲା । ଗୁପ୍ତ ଭିତରେ ନୂତନ ତନ୍ତ୍ରୀର ଆଶୁ କମ୍ପନ ଖେଳିଗଲା । ସେ ଲେଖି ପାରିଲା ନାହିଁ । ଚିଠି ଖଣ୍ଡିକ ତା' ଭିତରେ ବନ୍ଦ ରଖି ପୁଣି କଲମ ଧରିଲା । ଲେଖିଲା—

ଶ୍ରୀ ଭୁବନ ବିହାରୀ ସୁନ୍ଦରୀ ମହାପାତ୍ର
ରୁମ୍ ନମ୍ବର ୭୪, ଇଷ୍ଟ ହଷ୍ଟେଲ
କଟକ-୩

ଥରେ ଦୁଇଥର ମଧ୍ୟ ନିଜେ ନଚେଇ ନଚେଇ ଦେଖିଲା । ଠିକଣାରେ ବନାନ୍ ଭୁଲ୍ ନାହିଁ ତ ? ମନ ବୁଝିଲା ନି । ପୁଣି ଥରେ ସାଦା କାଗଜ ଖଣ୍ଡିକରେ ଇଂରେଜୀରେ ଲେଖିଲା—ନାଁ...ଅବିକଳ ସବୁ ଠିକ ।

କବାଟ ଫିଟାଇ ସେ ଡାକିଲା, ରାମା...ରାମା...

ହଟେଲ ରାମା ଟିକେ ବିଶ୍ରାମ ନେବାକୁ ଯାଉଥିଲା, ରବିବାର ଦିନ...ଖାଇବେଳ...କାମଦାମ ସାରି ଦେଇଛି । ପାଟି ଶୁଣି ସେ ଧାଇଁ ଆସିଲା । କହିଲା, କଣ ?

ଏଇଠିକି ଆ......

ସବୁଦିଆ କଥା ପଦକ ଶୁଣି ତାର ତମତମ ଉତ୍କଣ୍ଠା ଟିକେ ଧିମେଇ ଗଲା । ସେ ପଚାରିଲା, କଣ ?

ଏଇ ନେ'—ଆଠଣା ପଇସା...ଅତି ଗୁପ୍ତ ଭାବରେ ଏ ଚିଠି ନେଇ ବୁଢାମଙ୍ଗଳ ପୋଷ୍ଟଅଫିସରେ ପକାଇ ଦେଇ ଶୀଘ୍ର ଚାଲି ଆସିବୁ । ମନେ ରଖିବୁ ନା...ଲେଟର ବାକସ ଆଉ ନାହିଁ ସେ

ଚିଠି ବାକ୍ସ ଭିତରକୁ ଚିଠିଟା ଗଲା କି ନାହିଁ, ଭଲକରି ଦେଖିବୁ । ମନେ ରହିଲା ନାଁ ?

ହଁ…କାହିଁକି ଆମର ଏଠି ତ ଚିଠି ବାକ୍ସ ଅଛି, ସେଇଥିରେ ପକାଇ ଦେଲେ ଚଳିବ ନି ଯେ ମୁଁ ପୁଣି ଏତେ ବାଟ ଯିବି ?

ନାଁ, ସେଥିପାଇଁ ମୁଁ ତୋତେ ବରଂ ଆଉ ଅଠଣା ଦେଉଛି । ତୁ ଜଲଦି ଯା ।

ରମା ମନେ ମନେ କହିଲା, ଆଜି ଏକ ନୂଆ କଥାଟେ ମା… କେବେ ନାହିଁ କାଳେ ନାହିଁ…ଆଜି ଜଣ ଗନ୍ଧାପୁଟନେଇଁ ଦିନ ମାଇଁ…ସେ ବୁଲିଯାଉଥିଲା । ତାକୁ ପୁଣି ସୁଜାତା ଡାକିଲା, ଦେଖ ରମା, ଯେପରି କେହି କିଛି ଗନ୍ଧ ସମ୍ବନ୍ଧ ନ ପାଆନ୍ତି ।

ଏଇ କଥା ନାଁ……

ରମା ତାର ତରବରରେ ବୁଲିଗଲା ! ଝରକା ଖୋଲି ସୁଜାତା ତାର ଗଲା ବାଟକୁ କିଛି ବେଳଯାଏ ଚାହିଁ ରହିଲା । ରମାର ସାବଳୀ କମିଜ ଖଣ୍ଡିକ ମଧ୍ୟାହ୍ନ ଖରା ଭିତରେ କ୍ରମେ କ୍ରମେ ଦୂରକୁ ଦୂରକୁ ଅଦୃଶ୍ୟ ହୋଇଗଲା । ସୁଜାତା ଭାବିଲା, କେଜାଣି କାଳେ ତାର ଗତି ବିଧି ଲକ୍ଷ୍ୟ କରୁଥିବେ, ସେ ସାଙ୍ଗେ ସାଙ୍ଗେ କବାଟ ବନ୍ଦ କରି ଦେଲା ।

ଦେହ ସାରା ପୁଣି କମ୍ପନ…ଝାଳ କଣ୍ଠି ଆସିଲାଣି । ଝାଳ ଲାଗୁଛି । ସେ ଖଟ ଉପରେ ଶୋଇ ପଡ଼ିଲା । ଟିକେ ଦମ୍ଭ ବାନ୍ଧିଲା । ମନରେ ପୁଣି ଭୟ ହେଲା, ଆଜି ଯାଏ ତ ସେ ଭୁବନବାବୁଙ୍କୁ ଚିଠି ପତ୍ର ଲେଖି ପାରିନାହିଁ । ଏ'ଟା ତାର ନୂଆ କି ପ୍ରଥମ ଚିଠି…ସେ ଯେବେ ଖରାପ ବୁଝନ୍ତି, ତା' ହେଲେ ତା'ର ଦଶା କଣ ହେବ ?

ମନ ଭିତରେ ଏମିତି ଜଞ୍ଜାଳଟା ଜଳିଲା ତଳି…ବାପା ବୋଉ ଜାଣିବେ । କି ମୁସ୍କିଲ କଥା । ତା' ପରେ ସେ ତ ଭୁବନ-

ବାବୁଙ୍କ ଚିଠି ପଢ଼ ଦେବା କଥା ବିଶେଷ ଜଣା ନାହିଁ । ଖାଲି ମାତ୍ର ପରିଚୟ—ଚିହ୍ନା, ବନ୍ଧୁତା······

ଆଚ୍ଛା, ଏତକ ପତ୍ରସବୁରେ କ'ଣ ଚିଠିପତ୍ର ଦିଆ ନିଆ ଚଳେନା ।

କିଏ ତାଙ୍କୁ ଏ ନୂଆ ବାଟ ବତାଇ ଦେବ ?

ଛଟପଟ ହେଲା ସେ···ନିଦ ଆସୁନି । ଭାବିଲା, ଟିକନିଖି ଚିଠି ଗୁଡ଼ିକୁ ସେ ଚିରିଦେଇ ମୋଡ଼ି ଦେବ । ଖଟ ଉପରୁ ଉଠି ସେ ଟୁକୁରା ଟୁକୁରା ଚିଠି ଗୁଡ଼ାକ ସାଇତିବାକୁ ଲାଗିଲା । ମନେ ପଡ଼ିଲା, ଖଣ୍ଡେ ତ ବଡ଼ ଚିଠି ସେ ଲେଖିଥିଲା ।

ଦସ୍ତାପତ୍ର, ବିଛଣାତଳ, ଖଟତଳ, ମଶାରି ଉପର—ସବୁ ଛଡ଼ାଖଣ୍ଡ ଖୋଜିଗଲା, ତଥାପି ପାଇଲା ନାହିଁ । ଭୀତ ଆତୁର ଚମକ ଉଠିଲାଣି । କିଏ ନେଲା ? କୋଉ ଜଣ ସନ୍ଦେହ କରି ବହିପତ୍ର ଖୋଜା ଖୋଜି କରୁଥିଲା କି ? କ'ଣ କରିବ ସେ ? ସୁଜାତାର ଆଖି ଛଳ ଛଳ ହୋଇ ଆସିଲା । ସେ ଈଶ୍ୱରଙ୍କୁ ଡାକ ପକାଇଲା······

ତଥାପି ବହିର ପୃଷ୍ଠା ଦେଉଥା ଓଲଟୁଛି । ଗଣିତ ପରେ ଜ୍ୟାମିତି, ଜ୍ୟାମିତି ପରେ ବୀଜ ଗଣିତ, ଇତିହାସ, ଭୂଗୋଳ, ଗ୍ରାମାର, ସଂସ୍କୃତ, ହିନ୍ଦୀ, ଇଂରାଜୀ ସବୁ ବହି ଘାଣ୍ଟା ଚକଟା ସରିଲାଣି । କାହିଁ, ତାଉ ଚିଠି, କାହିଁ ତାର ଚିଠି ? କାହିଁ, କାହିଁ···

ମଥା ଘୂରିଗଲା ସୁଜାତାର, କି ରକମ ଯନ୍ତ୍ରଣା ପହିଲୁ ପହିଲୁ ସେ ପାଇଲାଣି ? ଆହୁରି ତ ଅନେକ ବାଟ ଅଛି ।

ଗାମ ଫେରିନାହିଁ ।

ବିକ୍ଷିପ୍ତ ଭାବରେ ସେ ପଡ଼ିଥିଲା ମା'ଙ୍କ ଶୋଇବା ଘରେ । ଟୁନୁ ଓ ଲୁନି ଶୋଇ ପଡ଼ିଛନ୍ତି । ଏପାଖ ସେପାଖ ଚାରପଟେ ସ୍ତବ୍ଧିଲା । ଘୁଞ୍ଚି କ'ଣ ଭାବି ନିଜ ରୁମକୁ ସେ ଫେରି ଆସିଲା ।

ରମା ଝାଳ ନାଳ ହୋଇ ଫେରି ଆସିଲା । କବାଟରେ ହାତ ମାରି ଡାକିଲା, 'ଝଟ କବାଟ ଫିଟା ।'

ସୁଜାତା ସେତେବେଳକୁ ବସି କାନ୍ଦୁଛି । ମୁଣ୍ଡ ଭିତରେ ଅସହ୍ୟ ଉତ୍ତାପ···ଦେହସାରା ଗରମ । ଦୁଃଖ ଓ ଆଶଙ୍କାର ଛାପ୍ସା ଛାଇ ମୁହଁରେ ଫୁଟି ଉଠୁଛି । ରମାର ଡାକ ଶୁଣି ସୁଜାତା ଧଡ଼ପଡ଼ କରି କବାଟ ଫିଟାଇ ଦେଲା । କହିଲା, ପକାଇଲୁ କିଠି ? ବାଟରେ କିଏ ଦେଖିଥିଲା କି ! ରମା ଅଙ୍ଗ ଅଙ୍ଗ ହୋଇ କହିଲା, ଅମଳ ବାବୁ···

ସୁଜାତା ପ୍ରମାଦ ଗଣିଲା । ଅମଳ ବାବୁ ତାର ଟିଉଟର । କଲେଜରେ ପଢ଼ନ୍ତି । ଅତି ତୀକ୍ଷ୍ଣ ବୁଦ୍ଧି ତାଙ୍କର । ନିର୍ମମ ଆଉ ନିଷ୍ଠୁର ହୃଦୟ···ସେ ତ ଏ କଥାର ଠେର ପାଇ ସାରିବେଣି ! ବୁଣ୍ଡାକୁଣୀ କ'ଣ ନ କଲା ?

ସନ୍ତର୍ପଣରେ ପଚାରିଲା, କ'ଣ କହୁଥିଲେ କି ?

ନାହିଁ, ପଚାରୁଥିଲେ ଖାଲି କୁଆଡ଼େ ଆସିଚୁ ?

ତୁ କଣ କହିଲୁ ?

କହିଲି ଏଇ ବଜାରକୁ ଆସିଥିଲି ।

ସେ କଣ କହିଲେ ?

କିଛି କହିଲେ ନାହିଁ ।

କିଛି କହିଲେ ନାହିଁ ?

ମୁଁ ପଚାରିଲି, କୁଆଡ଼େ ଆପଣେ ଆସିଥିଲେ । ସେ କହିଲେ ହୋଟେଲକୁ ଆସିଥିଲେ । ତାଙ୍କ ସୁହୃଦ କ'ଣ ଖାଇଥିଲା, ସେଇ ପଇସା ଦେବା ପାଇଁ···

ଆଉ କିଛି କହୁ ନ ଥିଲେ ?

ନାହିଁ ତ ! ମୁଁ ପଚାରିଲି ଆଜି ଆପଣ ପିବେ ତ ? ସେ ମନା କଲେ ।

ସ୍ୱାମୀ ଏତିକି କହି ବସି ପଡ଼ିଲା । ସୁଜାତାର ତନ୍ଦ୍ରାର ସୁଅ କ୍ଷିପ୍ତ ବିକ୍ଷିପ୍ତ । ସେ ପଚାରିଲା, ଆଚ୍ଛା ସ୍ୱାମୀ, ଆଜ କେହି ଏ ଘରକୁ ଆସିଥିଲା କି ?

ନାହିଁ ତ !

ହଁ, ତୁ ଟିକେ ମନେ କର୍, କୋଉ ଢେରକା କେହି ଆସି ନାହାନ୍ତି ?

କୋଉ ଜଣ ଆପଣଙ୍କ ଏଠିକି ଆସନ୍ତି ଆପଣ ଥିଲାବେଳେ ?

ନାହିଁ ମୁଁ କେତେବେଳେ ନଥିବି, କେହି ଆସି ନାହାନ୍ତି ?

ମୋର ସେମିତି କିଛି ଲକ୍ଷ୍ୟ ନାହିଁ ।

ସୁଜାତାର ମୁହଁ ବିକୃତ ଓ ଆଶଙ୍କାରେ ଆହୁରି ନାଲି ପଡ଼ିଗଲା ।

ସ୍ୱାମୀ ଜଡ଼ିତ କଣ୍ଠରେ ପଚାରିଲା, କାହିଁକି ?

ହୁଁ...

ଅନ୍ୟମନସ୍କ ଭାବରେ ସୁଜାତା ହୁଁ ଭରିଲା । ସ୍ୱାମୀ କହିଲା, କଣ କିଏ ନେଇଛି ନା କଣ ?

ହଁ ଖଣ୍ଡେ କାଗଜ...

କଣ ଖୁବ୍ ଦରକାରୀ କାଗଜ ନା କଣ ?

ସୁଜାତା ଚିଡ଼ି ଉଠିଲା । କହିଲା ତୁ କଣ ଖେଳୁଚୁ ?

ନାଇଁ ମୁଁ ସେଇ କହି କଥା ପଚାରୁଥିଲି ନା, ମୋ ଉପରେ ଖାଲି ରାଗୁଚନ୍ତି କାହିଁକି ? ବର୍ତ୍ତମାନ ତ ଖଣ୍ଡେ କାଗଜ ଦେଇ ଡାକଘରକୁ ଦେଇ ଆସିଲି ।

ସ୍ୱାମୀ—ଚୁପ୍ ଚୁପ୍...

ସ୍ୱାମୀ ଚୁପ୍ ଚୁପ୍ କରି କହିଲା, ଦେଖୁ, ଆଚ୍ଛା କାଲି ରାତିରେ ତମେ ମତେ ଖଣ୍ଡେ ବହି ଦେଇଥିଲ, କହିଲ ସାର୍ ଛାଡ଼ା ହୋଇ ଛନ୍ତି, ଯା ଏ ଖଣ୍ଡିକ ଶୀଘ୍ର ଦେଇ ଆ—

ସୁଜାତାର ଚିନ୍ତା ଘାରି ଧରିଲା । ଗୋଟି ଗୋଟି ହୋଇ ସମସ୍ତ ଘଟଣା ମନେ ପଡ଼ିଲା । ସେ ତକିଆ ଉପରେ ମୁଣ୍ଡ ଦେଇ କାନ୍ଦିବାକୁ ଲାଗିଲା । ମାତ୍ର କାନ୍ଦି ପାରିଲା ନାହିଁ ।

ମନେ ପଡ଼ିଲା, ଇଂରେଜୀ ପ୍ରୋଜ୍ ବହିର ପ୍ରୋଡିଗାଲ୍ ସନ ସୁସ୍ମିତା—ସେ ସେହି ବିଷୟ ପଢ଼ୁ ପଢ଼ୁ କିଛି ଲେଖିଥିଲା । କିଛିଟା ତାର ଭିତରେ ରହି ଯାଇଛି ଯେମିତି ।

କଣ କରିବ, ସୁଜାତା କିଛି ଭାବି ପାରିଲା ନାହିଁ । ସାର୍ ନିଶ୍ଚୟ ତାର ଦୁର୍ବଳତା ଜାଣି ନେଇ ସାରିଥିବେ । ରମାକୁ ଅବା କୋଉ ବିଶ୍ୱାସ । ସେ ଯଦି ତାଙ୍କୁ କିଛି ଜଣାଇବାକୁ ଆସିବା କଥା କହି ଦେଇଥାଏ, ତା ହେଲେ ତ କଥା ସରିଗଲା ।

ସୁଜାତା କଳାକାଠ ପାଲଟି ଗଲା । ମନେହେଲା ତା ମୁଣ୍ଡ ଉପରେ ଯେମିତି ଆକାଶ ଛିଣ୍ଡି ପଡ଼ୁଛି । ଆଖି ଦିଟା ଅତି ଲାଲ ପଡ଼ିଗଲା । ପାଟିରୁ ବି ବଚନ ବାହାରିଲା ନାହିଁ ; ଛାତି ତ ଥରୁଚି ।

ଟିକିଏ ଧୈର୍ଯ୍ୟ ଧରି ସେ ରମାକୁ ଆହୁରି ପାଖକୁ ଡାକିଲା । କହିଲା, ରମା ସତ କହ, ତୁ ସାରଙ୍କୁ କିଛି କଥା କହିଲୁ ?

ନାଁ...

ମୋ ରାଣ !

ଠାକୁରଙ୍କ ଦେଇ, ତମ ପାଦ ଛୁଇଁକି କହୁଛି—ମୁଁ ତାଙ୍କୁ କିଛି କହିନି ।

ଅଚ୍ଛା ଏ କଥା ତୁ କାହାକୁ କହିବୁ ନି ।

ମୋ ରାଣ, ତମ ପାଦ ଛୁଇଁ କହୁଛି କାହାରିକି କହିବି ନାହିଁ ।

ସତ ?

ହଁ ସତ !

## ✻ ଦୁଇ ✻

ଝାଳ ସର ସର ସିଲ୍କ ପଞ୍ଜାବୀଟାକୁ ବ୍ରାକେଟରେ ରଖି ରଖି ଭୁବନ ହାତରୁ ସେଇଟା ଖସି ପଡ଼ିଲା । ବାସୁ ରୁମ ଭିତରେ ବସି 'ବ୍ଲୁ ବାର୍ଡ' ପଢ଼ୁଥିଲା । ଶ୍ରାନ୍ତ ଭୁବନକୁ ଦେଖି ସେ ବହି ଉପରୁ ମୁଣ୍ଡ ଟେକି ପଚାରିଲା, ମିଷ୍ଟର ସୁନ୍ଦର, ତୁମେ ଏତେବେଳେଯାଏ କେଉଁଠି ଥିଲ ?

ନାଁ ଟିକେ ଟାଉନ ଆଡ଼େ ଯାଇଥିଲି ।

ଟାଉନ ଆଡେ ଯାଇଥିଲ—ନାଁ...

ବଡ଼ ତୀକ୍ଷ୍ଣ ଆକ୍ଷେପରେ ବାସୁ ଭୁବନକୁ ଚାହିଁଲା । ଭାବିଲା, ଭୁବନ ସୁନ୍ଦରୀ ଆଗରେ ପେଟ ଲୁଚାଇଲେ ଚଳେନା ! ବାସୁ ବିଲକୁଲ ବୋକା ନୁହେଁ, ସେ ପ୍ରେମ କରି ନାହିଁ କିନ୍ତୁ ତାର ଦୂରଦୃଷ୍ଟି ଅଛି ସେ କୌଣସି ପ୍ରେମିକକୁ ଷ୍ଟଡି କରିବାକୁ...

ଭୁବନ ଜୋତା ଖୋଲି ସାରି ଗେଞ୍ଜି ପିନ୍ଧିଲା । ଲୁଗା ପାଲଟି ଲୁଙ୍ଗି ପିନ୍ଧିଲା । ଫେଡେଇଟା ପୂର୍ବପରି ସମାପ୍ତ ହୋଇ ରହିଲା ଭାବିଲା, କ'ଣ ମୁଁ ପ୍ରେମିକ ?

ନାହିଁ ଭୁବନ ତୁମେ ପ୍ରେମିକ ନୁହଁ, କିନ୍ତୁ ବ୍ୟାଧିଗ୍ରସ୍ତ ଏକ ତରୁଣ—ଠିକ ରାହୁଗ୍ରସ୍ତ ଚନ୍ଦ୍ରପରି ।

ମାନେ...

ଅର୍ଥାତ୍ ତୁମେ'ପ୍ରେମିକ, କିନ୍ତୁ ବନ୍ଧନ, ପ୍ରତିଘାତ ଓ ବାଧାବନ୍ଧ ତୁମ ଆଗରେ ହିମାଳୟ ପରି ରହିଛି । ସତ ଭାବିଲ, ଭୁବନ, ତୁମେ ଲଭରେ କାହାର ପଡ଼ନାହଁ ?

ହୁଁ ପଢ଼ିଛି, କ'ଣ ହେଲା ସେଠୁ ?

କିନ୍ତୁ ନାହିଁ, ବ୍ୟାଧିଗ୍ରସ୍ତ ତରୁଣ···ବାବା, ଧୀରେ ସୁସ୍ଥ ସ୍କୁଲ୍—ପଥ ବଡ଼ ଦୁର୍ଗମ···

ବାପୁ ଗୀତ ଗାଇଲା, 'ସଙ୍ଗାତ, ପୀରତି ପଥ ଖସଡ଼ା'···କହିଲା, ଆଜିକି ପ୍ରାୟ ତିନିମାସ ହେବ ତୁମର ଭାବଭଙ୍ଗୀ,ଚାଲିଚଳଣି ସବୁ ବଦଳି ଯାଇଛି । ବିଂଶ ବର୍ଷ ଶିଳ୍ପୀନର ସୁଟ୍ ତୁ—ସିଙ୍ଗଲ ବ୍ରେଷ୍ଟ ଗାଉନ୍-ପଞ୍ଜାବୀ, ଅଥଚ ବେଶଭୂଷା, ଅସନାମି କଳ୍ପନା ଓ ପ୍ରେମପତ୍ର ଲେଖିବାରେ ତୋର ଶକ୍ତି, ସମୟ ଓ ଅର୍ଥ ଅଜସ୍ର ବ୍ୟୟ କରୁଛୁ । ଟିକେ ଶୁଣାଇବୁ କି ବନ୍ଧୁ, ତୁମର ସେ ପ୍ରେମିକାଙ୍କ ନାଁଟି କ'ଣ ?

ଭୁବନ ଓ ବାପୁ ମାଇନର ସ୍କୁଲର ସାଙ୍ଗସାଥୀ । ବାପୁ ଅଭାବ-ଗ୍ରସ୍ତ କିନ୍ତୁ ନୀଚ ନୁହେଁ । ତାର ଉନ୍ନତ ହୃଦୟ ନିକଟରେ ଭୁବନ ନଇଁ ପଡ଼ିଛି ।

ଥମେଇ ଥମେଇ ବାପୁ ପଚାରିଲା, ଭୁବନ, ଆଚ୍ଛା ମୁଁ ସେ ତୁମର ପ୍ରେମିକାଙ୍କୁ ଜାଣେ ?

ଜାଣ ତୁମେ ବାପୁ···ଭୁବନ ତାକୁ ଆନନ୍ଦରେ କୁଣ୍ଢାଇ ପକାଇଲା । କହିଲା, ଭାଇ, ବାପୁ ! ତୋତେ ନ କହିବି ତ ଆଉ କାହାକୁ ଏ ପ୍ରାଣର କଥା କହିବି । ଶୁଣିବ ଯେବେ ତୁମେ ମୋର ଜୀବନର ଇତିହାସ । କିନ୍ତୁ ବନ୍ଧୁ, ମୁଁ କ'ଣ ତାକୁ ପାଇବି ?

ହଁ ନ ପାଇବ କାହିଁକି ? ତୁମର ଅଜସ୍ର ଧନସମ୍ପତ୍ତି, ଅନିନ୍ଦ୍ୟ ଦେହରେ ଆଜି ଭରାଳ ଯୌବନ ପଡ଼ି ରହିଛି । ତୁମେ ତାକୁ ପାଇଲେ ଏ ଗୁଣ୍ଡିକ ତୁମର ଧନ୍ୟ ହେବେ । ହଁ, ତାଙ୍କର ନାଁଟା କ'ଣଟିକି ?

ସୁଜାତା—ଆଚ୍ଛା ବାପୁ, କେଡ଼େ ସୁନ୍ଦର ଆଉ ରୋମାଣ୍ଟିକ ଏ ନାଁଟା ?

ହଁ ନିଶ୍ଚୟ ରୋମାଣ୍ଟିକ୍—ଲଭରର୍ ଆଖିରେ ତାର ପ୍ରେମିକାର ଦୋଷ ଗୁଣ ମଧ୍ୟ ଅତି ସ୍ୱର୍ଗୀୟ ।

ରଖେତ୍, ତୋର ଖାଲି ସବୁବେଳେ ସେଇ କଥା—

ଆଚ୍ଛା, ଏଣିକି ଭଲ କଥା କହିବ । କହିଲୁ, ଚିଠି ପତ୍ରର କିଛି ଆଦାନ ପ୍ରଦାନ ଚାଲିଲଣି ?

ହଁ, ସେମିତି କିଛି ।

କାହିଁ, ତୁଇ ଏତେ ଦିନ ହେଲା ମୋତେ ଏ ଖବର କିଛି କହୁନାହୁଁ । ମୁଁ ଖାଲି ଅନ୍ଦାଜ କରି ଯାହା ଜାଣୁଛି ।

ହଠାତ୍ ହଷ୍ଟେଲ ଲାଇଟ୍ ଲିଭିଗଲା । ରାତି ଏଗାର ବାଜିଲାଣି, ଭୁବନ ତାର ଅଲମିରାରୁ ମହମବତୀ ବାହାର କରି ଲଗାଇଲା । ରୁମଟି ପୁଣି ହସି ଉଠିଲା ।

ବାସୁ ଓ ଭୁବନ ଦୁଇଖଣ୍ଡ ସିଗାରେଟ୍ ଧରାଇଲେ । ବାସୁ ପଚାରିଲା—Orient କୁ ଆଉ ଗଲୁ ··

କ'ଣ ହେ Cross Words Puzzle ଟା ସରି ନାହିଁ ? କେମିତି ସରିବ ଭୁବନ, ତୋ ଜୀବନରେ ତ ପୁଣି ଆସି ପଜଲ୍ ଦେଖା ଦେଲଣି । ଆଚ୍ଛା, ଚିଠି ଗୁଡ଼ାକ ଦେଖାଇ ?

ଭୁବନ ସୁଟ୍‌କେଶ ଖୋଲି ଚିଠି ସବୁ ବାହାର କଲା । ବାସୁ ଖଟ ଉପରେ ଶୋଇ ରହି ଟେବୁଲ ଉପରର ମହମବତୀ ଆଲୁଅରେ ନେଳି କାଗଜରେ ପ୍ରେମର ପୂର୍ବରାଗ କଥା ପଢ଼ିବାକୁ ଲାଗିଲା । ଏକ ଧ୍ୟାନରେ ଭୁବନ ଚୌକିରେ ବସି ଶୁଣୁଥିଲା ।

ବାସୁ କହିଲା, ତୋର ଚିଠି ସବୁ କଣ ଡାକରେ ଯାଏ ?

ନାଁ ।

ଆଉ ?

ମୁଁ ଠିକ୍ ଗାର୍ଲସ୍କୁଲ ଛୁଟି ବେଳକୁ ପାର୍କ ସାମନାରେ ଠିଆ ହୋଇଥାଏ । ଦେଖା ସାକ୍ଷାତ ହୁଏ । ଚିଠିପତ୍ର ଦିଆନିଆ ହୁଏ—ତା ପରେ ମୁଁ ଫେରିଆସେ ।

ଚିଠିରୁ ଯାହା ଜଣା ପଡ଼ୁଛି, ସ୍ନିଗ୍ଧା ତୋ ପାଇଁ ଏକ ରକମ ପାଗଳ ହୋଇ ଉଠିଲାଣି । ଦିନେ ନାଁ ଦିନେ ଗୋଟିଏ ଏଙ୍ଗେଜ୍‌ମେଣ୍ଟ ଚାନ୍ସ ବି ତୋତେ ମିଳିଯାଉଛି ।

ତୋର ସବୁବେଳେ ଖାଲି ଥଟ୍ଟା !

ନା ନିହାତି ସତକଥା କହୁଛି ବୋଲି ?

ଭୁବନର ଆଖି ଟଙ୍କା ଚଢ଼ି ଯାଉଛି । ଦେହଟା ଭାରି ଭାରି ଲାଗୁଛି । ସେ ଶୋଇ ରହିଲା ।

ବାପୁ ଚିଠି ଗୁଡ଼ିକ ପଢ଼ି ଗଲା ଅଦ୍ଭୁତ ଗତିରେ । ପଚାରିଲା, ଭୁବନ, ଆଜି ଏ ଚିଠିଟିର ଉତ୍ତର ବୋଧହୁଏ ଦେଇ ନ ଥିବୁ । ଦେବୁ ତ ନିଶ୍ଚୟ । ମୁଁ ତୋତେ ଯାହା ଇଙ୍ଗିତ ଦେଉଛି, ସେଗୁଡ଼ିକ ବି ଲେଖ ।

ପାଗଳଙ୍କ ପରି ଭୁବନ କହିଲା—ଆଚ୍ଛା କଣ କହ—

ବାପୁ ଡାକିଲା—

ଭୁବନ ଉଠିଲା । ରାଇଟିଂ ପ୍ୟାଡ ବାହାର କରି ଲେଖିଲା ।

ବାପୁ ଡାକିଲା, ସତେ ଯେମିତି ବାପୁହିଁ ଭୁବନ ।

ଭୁବନ ତାର କଲମ ମୁନ ଚଳାଇଲା । ଲେଖିଲା—

ପ୍ରିୟା ମୋର,

ଦେଖା ହେଲାବେଳେ କିଛି କହି ପାରିଲି ନାହିଁ...କହି ପାରିବାର ଶକ୍ତି ନ ଥିଲା ମୋର । ତୁମର ଚଞ୍ଚଳ ଛଳ ଛଳ ଆଖିର ମରମ କଥା ମୁଁ ବୁଝି ପାରିଛି । ମନର କଥା ଓଠରେ ମୋର

ମରିଗଲା । ଅଳୁଦ୍ଧା ଦରଜ ନେଇ ଭୁବନ ଫେରିଲା ତାର ପ୍ରାଣର ବୋପର ପାଖରୁ······

ଜୀବନଟା ମୋର ଥିଲା ମରୁମୟ । ତୁମେ କାର୍ତ୍ତିକ ଗୋଟିଏ କ୍ଷୀଣ ଜଳାଧାର ସୃଷ୍ଟି କଲ । ମରୁ ଅଞ୍ଚଳରେ ଉଡ଼ୁ ଥିଲା ତପ୍ତ ସିକତା ।

ବାପୁ ଅଟକି ଗଲା—ନାଁ ନାଁ ଭୁବନ, ଲେଖ ଲେଖ ତତଲା ବାଲି । କ'ଣ ହେଲା ସେ ବାକ୍ୟଟା—ଭୁବନ ପଢ଼ିଲା, ମରୁ ଅଞ୍ଚଳରେ ଉଡ଼ୁଥିଲା ତପ୍ତ ସିକତା—

ବାପୁ କହିଲା, ଲେଖ, ମରୁ ଭୂଇଁରେ ଉଡ଼ୁ ଥାଲି ତତଲା ବାଲି, ଖଇଫୁଟା ବାଲି, ଝାଞ୍ଜି ପବନ, ଉତ୍ତପ୍ତ ଝଡ଼—ଯାତ୍ରୀ ମୁଁ ପଥଭ୍ରଷ୍ଟ, ଦିଗଭ୍ରଷ୍ଟ—ପିପାସାରେ ଜୀବନ କାତର, ବିକଳ ଓ ମୁମୂର୍ଷୁ ହୋଇ ଉଠୁଥିଲାବେଳେ କେଉଁ ସ୍ୱର୍ଗର ଦେବକନ୍ୟା ତୁମେ, ଜଳଧାରା ସଞ୍ଚାର କରିଦେଲ ?

ଭୁଲି ହୁଏ ନାଁ ।—ଜୀବନରେ ପରିଚିତ ତମର ମୋର ହୃଦୟ ବିନିମୟକୁ ଭୁଲି ହୁଏ ନାଁ, କେଦାରଗୌରୀର ପୁଣ୍ୟ ସୁରକ୍ଷିତ ମନ୍ଦିର ପ୍ରାଙ୍ଗଣର ସ୍ମୃତିକୁ, କିନ୍ତୁ ଭୁଲି ହୁଏ, ଏ ଜୀବନର ଅସହ୍ୟ ଜ୍ୱାଳା ଯନ୍ତ୍ରଣା ତୁମକୁ ଥରେ ମାତ୍ର ଦେଖିବାକୁ ପାଇଲେ ଅତି ନିକଟରେ, ଆହୁରି ନିକଟରେ·········

ଜାଣେ ନାଁ, ସୁଜାତା, ଏ ଜୀବନରେ ତୁମକୁ ମୁଁ ଅତି ନିକଟ-ତମ କରି ପାରିବି କି ନାହିଁ ? ଆଜି ତୁମେ—କାହିଁ କେଉଁ ନନ୍ଦନ ବନର ଦେବଦୁର୍ଲଭ ପାରିଜାତ, ବସୋରାର କେଉଁ ନିଭୃତତମ ବାଦସାହୀ ଉପବନର ସୁରକ୍ଷିତ ଗୋଲାପ···ଦ୍ରାକ୍ଷାବନର ଦିଗ୍‌ବଳୟ ସ୍ପର୍ଶୀ ଅପାର ସବୁଜ ପଲ୍ଲବର ଶରଣାର୍ଥୀ ବୁଲ୍‌ବୁଲ୍···ଆଜି ମୁଁ କାହିଁ ସ୍ୱନତମ ପ୍ରାଣୀଟିଏ, ଉଷ୍ଣତର ମୋର ଜୀବନ ପିପାସିତ

ମୋର ବସ ଆଜ୍ଞ ପ୍ରତ୍ୟାଶାଶାଣିତ୍ର ମୋର ଦୃଷ୍ଟି...ସୁଜାତା...ଭୁଲ ବୁଝିବନ । ସତେ କ'ଣ...ସତେ କ'ଣ...ମୋର ଭାଗ୍ୟରେ ସୁଜାତାର ସୁକୋମଳ କୋଳଶଯ୍ୟା ଅଛି ଭାବ ପାରୁନାହିଁ କହ୍ନି । ହୃଦୟ ଫାଟି ଯାଉଛି । ତସ୍ ବୁଜ ହୋଇ ଆସୁଚ ଅଶ୍ରର ପ୍ଲାବନରେ...ମୁଁ ଆଉ ଲେଖି ପାରୁନାହିଁ କହ୍ନି...

ମୋର କ'ଣ ମନେ ହୁଏ ଜାଣ ସୁଜାତା ? ଦୁନିଆର ନଗଡ଼ ବନ୍ଧନକୁ ତୁମେ ଓ ମୁଁ ହାତରେ ହାତ ଗଣ୍ଠି ଚିରମାର ଚାଲି ହସି ହସି ଚାଲି ଯାଆନ୍ତେ ଏମିତି ଏକ ଜାଗାକୁ—ଯେଉଁଠିକି ଦୁନିଆଁର ତାପ ସୁଧା ବାଜନ୍ତାନ ନର୍ଜନତମ ନିଭୃତତର ବନଭୂମି, କଳମର୍ମର ପଲ୍ଲବ...କଲ୍ଲୋଳିତ ଝରଣା, ସୁରଭିତ ସମୀର, ଚନ୍ଦ୍ରକିତ ନଶୀଥ...କଳକଣ୍ଠ କୋକିଳ...ଶୁଭ୍ର ସୁନ୍ଦର କୁଟୀରଟିଏ...ତହିଁରେ ଥାଆନ୍ତେ ତୁମେ ଓ ମୁଁ...

ବସନ୍ତ ଆସନ୍ତା ତାର ରୂପସମ୍ଭାର ନେଇ, ଫୁଲ ଫୁଟନ୍ତା, ପକ୍ଷୀ ଗାଆନ୍ତା, ମଳୟ ବହୁଥାନ୍ତା...ନୂତନ ପଲ୍ଲବର ମୃଦୁମର୍ମର ଗତଳରେ ନଦୀର ମଞ୍ଜରୀ ହୋଇଥାନ୍ତା ମୁଚଅଗ୍ରତର ସ୍ମୃତି, ମଲ୍ଲୀ ଫୁଟନ୍ତା, ଶୀତଳ ଜ୍ୟୋତ୍ସ୍ନାରେ ମୃଦୁଳ ସମୀର ପରେ ପ୍ରାଣମନ ଭରି ଉଠ୍-ଆନ୍ତା ପୁଲକିତ ଶିହରଣ...ତା'ର ସ୍ରୋତରେ ଭାସୁ ଭାସୁ ଦେଖା-ଦିଅନ୍ତା ମୌସୁମୀର ଆଶ୍ୱାସ...ବାହାରେ ଝିଙ୍କର ଝିଙ୍କ ର...ବିଦ୍ୟୁତ୍‌ର ଉଦ୍ଦାମ ସ୍ଫୁରଣ ଆକାଶର ଅସାର...ଗମ୍ଭୀରତର ନଶୀଥ...ନିଭୃତ କୁଟୀରରେ ତୁମେ ମୁଁ...ମୁଁ ତୁମେ...ଦୁହେଁ ଦୁହିଁଙ୍କୁ ଘନ ଆଶ୍ଳେଷରେ ବାନ୍ଧିରଖିଥାନ୍ତେ, ଆଉ ମୁଁ କହୁଥାନ୍ତି ରୂପକଥାର ସ୍ୱପ୍ନସୃଷ୍ଟ ଆଉ ତୁମେ ଶୁଣୁଥାନ୍ତ ତନ୍ଦ୍ରାଳ ଅବକାଶରେ...ତା'ର ତରଳ ପୂର୍ଣ୍ଣି ଶରତର ଜ୍ୟୋତ୍ସ୍ନା ହସି ଉଠନ୍ତା...ବୁକୁରେ ରଖି ମୁଁ ତମର କବରୀ ସାଜିଦିଅନ୍ତି ନବ ଶେଫାଳୀର ନୂତନ ବିନ୍ୟାସରେ ଆଉ

ପାଖାପାଖି ବସି ଖଣ୍ଡେ ଧୂପ କି ପ୍ରେମଶସ୍ୟ ପରି ଜଳୁଁ ଥାନ୍ତେ ଦୁହିଁଙ୍କୁ ଦୁହେଁ । ଅନନ୍ତ ହୋଇଯାଆନ୍ତା ଆମର ଅବଦାନ···ସୁଧା ଟେମଣନ୍ତା-ନାହିଁ ଏ ସୃଷ୍ଟିର ପରେ ସୃଷ୍ଟି ଆଉ ନ ଥାଉ ପରବେ ଅଣୁ-ପରମାଣୁର ଶକ୍ତିକ୍ଷମ ଅଦୃଶ୍ୟ ବନ୍ଧନରେ ବସି ଝୁଲୁଥାନ୍ତେ ତୁମେ ଆଉ ମୁଁ···ଶିଶିରଭେଜାର ସ୍ନାନମସ୍ତ ବଶୀଥରେ ଆମେ ଦୁହେଁ ଆତ୍ମର ନବଜ ଗ୍ରାବଟରେ ମିଶିଯାଆନ୍ତେ ··ଯୁଗ ଯୁଗ ଧରି, କଳ୍ପ କଳ୍ପ ଧରି ଆମର ମିଳନ ଥାନ୍ତା ଅଜର ଅମର, ଶାଶ୍ବତ ଓ ସୁନ୍ଦର···

ଆଜ କ'ଣ ଲେଖି ପାରୁ ନାହିଁ । ହୃଦୟ ଭିତରର ଅକୁହା କଥା ମୋର ଅସରନ୍ତି ପ୍ରବାହରେ ପ୍ଲାବିତ ହୋଇ ଉଠୁଛି । ବେଶୀ ଗୁଡ଼ାଏ ଲେଖିଦେଲି—କ୍ଷମା ଦେବ ।

ମୋର ଆଶ୍ଳେଷ ଗ୍ରହଣ କରିବ । ତୁମ ଚିଠିରେ ଇତି ଲେଖିଲେ ମନରେ ବଡ଼ କ୍ଷୋଭ ଆସେ । ଆମର ପ୍ରଣୟ ଜୀବନରେ ଇତି ଯେ ନାହିଁ ସୁଜାତା··········!

ବାସୁ ପଚାରିଲା, କେମିତି ହେଲା ଭୁବନ ?

ଏ···ଏତ ବଡ଼ଆ—ଅବିକଳ ମୋର ହୃଦୟର କଥା ! ବାସୁ, ତୁ ମୋର ପ୍ରାଣର କଥା କିପରି ଜାଣିଲୁ ?

ବାସୁ ଈଷତ୍ ହସିଲା । କହିଲା, ଦେଲୁ, ଚିଠିଟା ମୋ ଆଡ଼କୁ ଦେଲୁ—

ଭୁବନ ତା' ଆଡ଼କୁ ଚିଠି ଖଣ୍ଡ ବଢ଼ାଇ ଦେଲା । ବାସୁ ତନ୍ମୟ ଅବସ୍ଥାରେ ଚିଠିଟା ପଢ଼ିବାକୁ ଲାଗିଲା । ଭୁବନ ଏକଧ୍ୟାନରେ ସ୍ତମ୍ଭିତ । କେତେ ପୁଣି ସୋଗ କଲା···

କ'ଣ ଭାବି କେଜାଣି ବାସୁ ହଠ କାଟି ଦେଲା । ଭୁବନ କହିଲା, କ'ଣ କଲୁ···

ଛନ୍ଦର ସ୍ୱର କି ନରମ···କେତେ ଗାଢ଼···ସତେ ଯେମିତି ଭୁବନର ହୃଦୟରେ କିଏ ଶାଣିତ ତରବାରୀରେ ରକ୍ତାକ୍ତ ଗାର ଦୁଇଟି କାଟି ଦେଲା । ସେ ଚମକି ପଡ଼ିଲା । କହିଲା, ବାସ୍ତୁ ତୁ କ'ଣ କଲୁ ।

ଏ ସବୁ ଅବାନ୍ତର ହୋଇଗଲା ବୋଧହୁଏ—ସେଥିଲାଗି କାଟି ଦେଲି ।

କିନ୍ତୁ ତୁ ବୁଝି ପାରିଲୁ ନାହିଁ ବାସ୍ତୁ, କାହାର ହୃଦୟ ଉପରେ ତୁ ଚଳାଇ ଦେଲୁ ଏ ଶାଣିତ ଗାର···

ଆଚ୍ଛା ତୁ ଆଜ ଖଣ୍ଡେ ଉତ୍ତର ଦେ ।

ନିଶ୍ଚିତ ।

ମୁଁ ଏବେ ଯାଏ ।

ଭୁବନ କିଛି କହିଲା ନାହିଁ ।

ବାସ୍ତୁ ଚାଲିଗଲା । ଭୁବନ ନୂଆ ଚିଠି ଲେଖିବାରେ ଲାଗି ପଡ଼ିଲା । ଅଧଘଣ୍ଟା ପରେ ଚିଠି ଲେଖା ସରିଲା । ମୁଡ଼ା ହେଲା । ପ୍ରେମ ପତ୍ର ଏନ୍‌ଭଲପରେ ସୁନ୍ଦର ଭାବରେ ଲେଖିଲା —

ସୁଜାତା ଦେବୀ
କଟକ

ମହମବତୀ ନିଭିଲା । ଭୁବନ ଶୋଇ ପଡ଼ିବାକୁ ଚେଷ୍ଟା କଲା । କଳ୍ପନା, ସ୍ୱପ୍ନ, ଉତ୍ତେଜନା ଓ ଆବେଗରେ ତାକୁ ନିଦ ଆସିଲା ନାହିଁ । ବାସ୍ତୁ ତାର ରୁମ୍‌କୁ ଚାଲି ଯାଇଛି । ହୃଦୟର ନିଭୃତ କକ୍ଷରେ ସୁଜାତାର ପ୍ରତିଛବି ମୃଦୁ ମୃଦୁ ରଞ୍ଜିତ ହୋଇଛି । ମନର ପଟେ ଚିତ୍ର ବିତାନରେ ବାସ୍ତୁର ସମବ୍ୟଥାର ସ୍ମୃତି ପଡ଼ୁଛି । ଭୁବନ ଦେଖୁଛି, ବାସ୍ତୁର ପ୍ରାଣରେ ଅବିକଳ ପ୍ରତିଧ୍ୱନି—ସୁଜାତାର ପ୍ରାଣରେ ତାର ପ୍ରାଣର ସ୍ପନ୍ଦନ···

ମନେ ପଡ଼ୁଛି, ପାଠପଢ଼ା କଥା, ପରୀକ୍ଷା କଥା, ପାଶ ଓ ପ୍ରଶ୍ନର କଥା । ପରୀକ୍ଷା ବହୁତ ଦୂରରେ ନାହିଁ—ଦୂରରେ ରହିଛି ସୁଜାତା···

ଟର୍ଚ୍ଚର ଆଲୋକରେ ଭୁବନର ସ୍ୱପ୍ନ ସ୍ପନ୍ଦିତ ହୋଇ ଉଠିଲା । ସେ ଉଠିବସିଲା—ଦେଖିଲା ବାସୁ···

ଭୁବନ ଶୋଇ ନାହିଁ ?

ପ୍ରଶ୍ନ ଶୁଣି ଭୁବନ ଆହୁରି ଆଶ୍ଚର୍ଯ୍ୟ ହେଲା । ମଶାରୀ ଟେକି ବାସୁ ଭୁବନର ଖଟ ଉପରେ ବସି ପଡ଼ିଲା । ଟର୍ଚ୍ଚ ମାରି ଦେଖେ, ଭୁବନ ତାର ଛାତି ଉପରେ ଅଶୋକସ୍ତବକଟିଏ ରଖି ଦେଇଛି । ବାସୁ ତାକୁ ଉଠାଇ ନେଇ ପଚାରିଲା, ତୋତେ କିଏ କହିଲା ଭୁବନ, ଏ ଶୁଖିଲା ଅଶୋକସ୍ତବକ ତୋର ଛାତି ଉପରେ ରଖି ବାକୁ···ଏ ବ୍ୟାଧିର ଔଷଧ ଏ ନୁହେଁ···ଏଁଟା କ'ଣ ପ୍ରିୟତମାର ସ୍ମୃତି ନା କଣ ?

ଭୁବନ ନିରୁତ୍ତର । ମନେ ମନେ ଭାବିଲା, ବାସୁ ନିକଟରେ ତାର ପ୍ରଥମ ପ୍ରଣୟର ଇତିହାସ ଆଜିଯାଏ ନ କହି ସେ ଯେ କି ଭୁଲ ନ କରିଛି ? ସେଥିପାଇଁ ସେ ତାକୁ କ୍ଷମା ମାଗିବ ।

ମୋତେ ଭୁଲ ବୁଝନା ବାସୁ !

କାହିଁକି ?

ତୋ ପରି ସାଥିକୁ ମୁଁ ମୋର କଥାଟି ଏ ପର୍ଯ୍ୟନ୍ତ ଯାହା ଲୁଚାଇ ରଖିଛି ।

ବେଶ୍ ରଖିଥା—ସଂଯମିତ କରନାଁ ବାସୁକୁ ଏତେ ଶୀଘ୍ର··· ତେବେ ଏତିକି ଯେ ଏ ସ୍ତବକଟା ତୁ ରଖିଚୁ କାହିଁକି ?

ବଡ଼ କରୁଣ ଓ ବଦ୍ରୋହୀ ତାର ଇତିହାସ ।

ଭୁବନର ଜଡ଼ିତ କଣ୍ଠ, ଉଚ୍ଛ୍ୱସିତ ଦୃଷ୍ଟି—

ରୁମ୍ ଭିତରେ ଅନ୍ଧକାରର ନିଭୃତ ରହସ୍ୟ ।

## ✽ ତିନି ✽

ଚୁର ଆଖିର ଦେଖା, ନିତି ହୁଏ, ନିତି ନିଭି ଯାଏ । ଛୁଟନ୍ତା ନିଶା ପୁଣି ବହୁ ବେଗରେ ଛୁଟି ଚାଲେ—ସତେ ଯେପରି ତାର ସୀମା ନାହିଁ, ଶେଷ ନାହିଁ···ସ୍ପନ୍ଦନ ଆଉ ଅସୀମ ଭାବ ଅଭିପ୍ରାୟ···

ନୂଆ ନୂଆ ଚିଠି, ଉଚ୍ଛଳା ପ୍ରେମର ଶିହରଣରେ ସୁଜାତାର ଜୀବନ ଯୌବନ ସବୁ ଯେମିତି ଚଞ୍ଚଳ······

ସୁଜାତା ଭାବେ, ନିଜକୁ ନିଜେ ପଚାରେ । ଏ କଣ ? ଏକ ପରିବର୍ତ୍ତନ ? ଜୀବନରେ ଏତେ ସୁନ୍ଦର ପୁଣି କରୁଣ ଏ ଅନୁଭୂତି··· ନିଜ କଥା ଛାଡ଼ି ପର କଥା ଭାବିବାରେ ଏତେ ମାଦକତା, ଏତେ ଆନନ୍ଦ ଓ ଆକାଂକ୍ଷା ଦୂର ରହିଛି—ବର୍ଷେ ଦୁଇ ବର୍ଷର ପରିଚୟ··· ସଂକ୍ଷିପ୍ତ ସାକ୍ଷାତ—ହୃଦୟରେ ଆଶଙ୍କା, ପ୍ରାଣ ଭିତରେ ଆହ୍ଲାଦ···

ସୁଜାତାର କଳ୍ପନା ବହୁଦୂର ଚାଲିଯାଏ । ପୁଣି ଫେରିଆସେ । ସେ ନିଜକୁ ସଂଯତ କରି ରଖିପାରେ ନା !

କ୍ଲାସକୁ ଯାଏ—ଗାର୍ଲ୍‌ସ୍କୁଲ ପାଠ···ଉପନ୍ୟାସ ମଟର··· ସମବୟସୀ ସାଥୀ···ଫୁରଫୁର ଜୀବନ···ଥଲ୍‌ଥଲ୍ ଚିନ୍ତା···ଦେଖା-ଶିକ୍ଷା ଝଟକ···ସଜଫୁଟା ଯୌବନ ଆଉ ଜଳନ୍ତା କୌତୂହଳ— ସ୍ଲେଟ କଲିଜାରେ ଧ୍ୟାନ ହୁଏ ନା । ବହିପତ୍ର ଏଣେ ତେଣେ ଫୋପାଡ଼ି ଦେବାକୁ ଇଚ୍ଛା ହୁଏ । ଗଣ୍ଡି ଭିତରର ଆବଦ୍ଧହୋଇ ପକ୍ଷୀ ଏତେ କାଳ ଅପେକ୍ଷା କରିବାକୁ ଇଚ୍ଛା ହୁଏ ନା···ଭୁବନର କୋଳରେ ମୁହଁ ଗୁଞ୍ଜି ରଖିବାକୁ ପ୍ରାଣ ଅଧିରଲ ଲୁହେ । କିନ୍ତୁ ମିଳେ ନାହିଁ ସୁଯୋଗ ଓ ସୁବିଧା । କଳ୍ପନା କଳ୍ପନାରେହିଁ ଲୁହେ, ବଞ୍ଚେ ଏବଂ ବଢ଼େ ।

ସେ ଭାବି ପାରେ ନାଁ, ଏ ସବୁର ପରିଣତି କଣ ? କ୍ଲାସ୍‌ରେ ବସି ଏମିତି କେତେ କଣ ଭାବୁଛି, ଉଷା ଆସି ତା' କଥାରେ ବାଧା ଦେଲା । କହିଲା, ସୁଜାତା, ଗୋଟିଏ କଥା ତୋତେ ପଚାରିବାକୁ ମନସ୍ଥ କରିଛି । ପଚାରିପାରେ କି ?

ସୁଜାତାର କଳ୍ପନା ଥମିଗଲା । ସେ କହିଲା, 'ହଁ ପଚାରିପାରୁ ।' 'ଏଇ କେତେଦିନ ହେଲା—'ଉଷା ଏତିକିରେ ଅଟକିଗଲା । ସୁଜାତା ପଚାରିଲା—କ'ଣ ଏଇ କେତେଦିନ ହେଲା······

'ତୋତେ ମାନିଁଆ ଧରିଛି—ରୋଗ···'

'ନାହିଁତ, ମୁଁ ବେଶ ସୁସ୍ଥ ଅଛି । ମୋର କିଛି ରୋଗ ନାହିଁତ ? ତୁ ମିଛରେ ଖାଲି ଆରୋପ କରୁଛୁ ।'

'ନାଁ, ସୁଜାତା, ରୋଗ ନିଶ୍ଚୟ । ନ ହେଲେ କି ତୁ······'

'କ'ଣ ନ ହେଲେ କି ମୁଁ ?'

'ତୁ ସବୁବେଳେ ଅନ୍ୟମନସ୍କ ରହନ୍ତୁ, ଖାଲି କୁହୁଡ଼ି ପହଁରୁଚୁ ଯା ସେଇଥି, ନ ହେଲେ ଲଭ କରିଛୁ ନାହିଁ ।'

'କ'ଣ କୁହୁଡ଼ି ପହଁରୁଛି, ଲଭ କରିଛି ନାହିଁ—ତୋର ଏ ସବୁ କଥାରୁ ମୁଁ କିଛି ବୁଝି ପାରୁନାହିଁ······

ଅଞ୍ଜଳି କ୍ଲାସ ଦୁଆର ମୁହଁରୁ ପାଟିକରି ପଳାଇ ଆସିଲା । ହେଇ ସାର୍ ଆସିଲେ···

ସମସ୍ତେ ଚୁପ୍‌ଚାପ ରହିଗଲେ । ମାତ୍ର ଫୁସ୍‌ଫାସ୍ ହେଲେ ଏଇ ଦୁଇଟି ପ୍ରାଣୀ···ନନ୍ଦ ପଣ୍ଡିତେ ପହଞ୍ଚିଲେ—ବସୁସତ ପଚାଶ ପାଖାପାଖି । ହଠାତ୍ ଆଖି ପଡ଼ିଲା, ଅଞ୍ଜଳି ଓ ସୁଜାତା ଉପରେ··· ଅଭିଜ୍ଞତା ମୁଖର ଭଙ୍ଗୀରେ ସେ କହିଲେ, 'ମନ ଭଲ ନାହିଁ···' କ୍ଲାସ ପିଲା ସମସ୍ତେ ଛିଡ଼ା ହୋଇଥିଲେ । ପଛରେ ଛିଡ଼ା ହେଲେ

ଏ ବୁଝେ । ପଣ୍ଡିତେ ମହା ଗୁଣିଆ···ସବୁ ଲକ୍ଷ୍ୟ କରୁଛି । କହିଲା, 'ବସ···'

ବସି ପଡ଼ିଲେ ପଞ୍ଚାଏ ନଚ୍ଛୁଲ ଝଡ଼ି । ବଡ଼ ବୟସର ହେଜଲଖୋଲି ପଣ୍ଡିତର ଏ ଯାତନାଜାଳରେ ସମାଧି ନେଇଣ । ତଥାପି ତା'ର ଶାନ୍ତ ଅଛି । ଅଭିଜ୍ଞତା ଅଛି । ତିକ୍ତ ଅନୁଭୂତି ନ ଥିଲେହେଁ ତୀବ୍ର କଳ୍ପନା ଅଛି ।

ଗମ୍ଭୀର ସ୍ୱରରେ ଚଷ୍ଟି ନଗ୍ନଇ ସେ କହିଲେ, 'ଦେଖ, ସାବଧାନ ନ ହେଲେ ପରିଣତି ସାଂଘାତିକ—ବିପଦ ଓ ପତନ ଅନିବାର୍ଯ୍ୟ ।'

କଥା ପଦକ ଝାଇଁ ଝାଇଁ ମରମରେ ବାଜିଲା । ଯାହାଙ୍କର ମନର କଥା ପଣ୍ଡିତ କହିଦେଲା । ଅନୁମାନ କରିଥିଲା ଯାହା, ପ୍ରକୃତରେ ଦେଖିଲା କ୍ଲାସରୁ ଅନ୍ତତଃ ଛପଣ ପିଲା ସେଥିରେ ଲଜ୍ଜିତ ଓ ଚିନ୍ତିତ ହୋଇ ପଡ଼ିଛନ୍ତି ।

ଅଞ୍ଜଳି ସୁଜାତା ମୁହଁକୁ ଚାହିଁଲା । ସୁଜାତା ଅଞ୍ଜଳି ମୁହଁକୁ ଚାହିଁଲା ।

ସୁଧା ଏ କଥା ପଦକ ଶୁଣି ମୁହଁ ମୋଡ଼ି ଦେଲା । ପଣ୍ଡିତଙ୍କ ଆଖି ତାହା ଉପରେ—ସୁଧାର ବିକୃତ ଭଙ୍ଗି ସେ ଦେଖି ପାରିଲେ ନାହିଁ । କହିଲେ, 'ମୁଁ ଯାଉଛି, ଅଫିସରେ ମୋର କାମ ଅଛି । ପ୍ରିନସିପାଲ ଡକାଇଛନ୍ତି, ତୁମେ ଚୁପ୍‌ଚାପ ହୋଇ ବସି ପଢ଼ ।'

ସେ ଚାଲିଗଲେ ।

ମୁହୂର୍ତ୍ତକ ପାଇଁ ହାଡ଼ମାଂସର ଗୁଣ୍ଡିଏ ଉଠିଲା—ପଡ଼ିଲା ।

ତା'ପରେ···

କ୍ଲାସରେ ଗୋଳମାଳ···ଭିଡ଼ିନେଇ ସାଙ୍ଗସାଥୀ ଜୁଟିଗଲେ । କେତେ କଥା ପଡ଼ିଲା । ଦେଶକଥା, ପ୍ରେମକଥା, ରାଜନୀତି କଥା,

ଧର୍ମନୀତି କଥା—ଅନ୍ତତଃ ବେଶୀ ଆଲୋଚନା, ଫ୍ରସ୍ଫ୍ରସ୍ ଆଲୋଚନା, ପ୍ରେମକଥା—(Love affairs) ଏଇ କେତେକଥା, କହିଲା ସିନେମା ଷ୍ଟାରମାନଙ୍କର ଉଦାହରଣ ଦେଲା···ଅବ୍‌ଶେଷ ରଖି ଏଇ ଅଟା କହିଲା, 'ପରେ···'

ସୁଧା ଚକ୍‌ଟାଏ ଧରି ଡେକ୍‌ସ ଉପରେ କ'ଣ ଲେଖୁଥିଲା । ହଠାତ୍ ବ୍ଲାକ୍‌ବୋର୍ଡ଼ରେ ଲେଖିଦେଲା ଦୁଇଧାଡ଼ି କବିତା—

''ସ୍ୱାମୀ ପତ୍ନୀଜନେ କପଟ ଏ କଥା କହିବ
ମରମ ଦୁଃଖ ସରମେ ବା କେତେ ସହିବ
କହିଲେ ବାଜିବ ଅପଯଶ ସ୍ୱାମୀ କହିବେ
ଏତିକ କଥା ସେ···ଏତିକ ବୁକେ କ ଅଟକେ ।''

—ଅଃ

ଅଞ୍ଜଳିର ଆଖି ପଡ଼ିବା ମାତ୍ରେ ସେ ସୁଜାତାକୁ ପଚାରିଲା—'ଏ ଉମର ରୋଗର କଥା—'

ସୁଜାତା କୃତ୍ରିମ ଛଳନାରେ କହିଲା, 'କାହିଁ, ତୋର କ'ଣ ନୁହେଁ କି ସେ ଲେଖିଲା ବାଳାର ନୁହେଁ···ଏତ ସବୁରି ଜୀବନର ନିଭୃତ୍ୟ ରହସ୍ୟ···'

ସୁଜାତା ପଚାରିଲା, 'ସୁଧା, ଏ କବିତା ଦି' ଧାଡ଼ି କେଉଁଠୁ ପାଇଲୁ ମ···'

'ନିଜେ ବାନ୍ଧି ଦେଇଛି ।'

'ଭଲ କୋବି ତ ।'

କ୍ଲାସର ପିଲା ଜଣେ କେହି ହସି ଉଠି କହିଲା, 'ବନ୍ଧାକୋବି ନ ହେଲେ ରକ୍ଷା ।'

ଅଞ୍ଜଳୀ ପଚାରିଲା, 'କ'ଣ ସତେ ?'

ଦାଉଁ ଅଞ୍ଜଳି, ଶ୍ରୀଭଙ୍କ ଇଂଲଶ ଖାତାରେ ଲେଖାଥିଲା, ମୁଁ ଶିଖି ନେଲି । ଦେଖିଲି ଶ୍ରୀବତ୍ସ ବେଶ୍ ସୁନ୍ଦର ...

ସୁଜାତାକୁ ଚାହିଁ ଅଞ୍ଜଳି ହସିଲା ।

କ୍ଲାସ ପିଲାଏ ଯେଝା ଧନ୍ଦାରେ ଲାଗିଗଲେ । ଅଞ୍ଜଳି ଓ ସୁଜାତା ପଛବେଞ୍ଚକୁ ଚାଲିଗଲେ । ସୁଧା ପଚାରିଲା, 'କ'ଣ ପଛବେଞ୍ଚର ମାରପେଞ୍ଚ—Love Politics

ନାଁ ଗୋଟାଏ ଘରୋଇ କଥା ।

ଆଚ୍ଛା, ମୁଁ ଏଇଠି ବସି ଶୁଣିନେବ ।

ଅଞ୍ଜଳୀ ପଚାରିଲା, 'ସୁଜାତା, ମୋର ଅନୁମାନ କଣ ଠିକ ନୁହେଁ !

ହଁ ।

ବର୍ତ୍ତମାନ ପରିସ୍ଥିତି କିପରି ?

ପରିସ୍ଥିତି ଭଲନୁହେଁ । ତାଙ୍କୁ ଆମଘରର ଲୋକ କେହି ଚାହାନ୍ତି ନା ! ବୋଉ କେବଳ ତାଙ୍କୁ ଦେଖିପାରେ ।

କ'ଣ ତମର ପ୍ରେମୀ ନୁହେଁ ତ ? They as a class mate the centre of nuisance.

ନାଁ ସେତ ଅନ୍ୟ ଜାତି ? [illegible]

ତା' ହେଲେ ତ ମିଳନ [illegible] । ଭରି କାହିଁକି ! ସନ୍ଦେହ କାହିଁକି, ଏତେ ଅବିଶ୍ୱାସ କାହିଁକି ! ସେ କ'ଣ ତୋର love ପ୍ରତ୍ୟାଖ୍ୟାନ କରୁଛନ୍ତି ?

ନାଁ, ମୁଁ ତାଙ୍କର ହୃଦୟ ଯେତିକି ଜାଣେ, କହୁଛି, ସେ ମୋତେ ଠକିବେ ନାହିଁ ।

ହଁ, ତୁ ତା କହିପାରୁ ! କିନ୍ତୁ ଠକିବାହିଁ ପ୍ରେମର ଅନ୍ୟ ସ୍ୱୀକୃତି ।

ତା ବୋଲି କ'ଣ ତୋର ପ୍ରେମର ଲକ୍ଷଣ ତା'ହା ?

ଗର୍ବକରି କହି ପାରିବନି ସୁଜାତା, ତୁ ତାଙ୍କୁ ଠକିବୁ କି ସେ ତୋତେ ଠକିବେ ।

ସୁଜାତା ହସିଲା । କହିଲା, 'ନାଁ, କେବେ ନୁହେଁ, କେବେ ନୁହେଁ ।
···ଅଞ୍ଜଳି ପଚାରିଲା, ତେବେ ତୁମର ଏ ପ୍ରଣୟ ସ୍ଥିର ଓ ଅଚଞ୍ଚଳ ?

ନିଶ୍ଚୟ !

ଏ ପ୍ରଣୟଟା ଏତେଦୂର ସୁନିଶ୍ଚିତ ତୋର, ଅଥଚ ତୁ ଥରେ ହେଲେ ତା'ର ପ୍ରଥମ କାହାଣୀଟା ତ ମୋତେ କହୁ ନାହୁଁ । ଆଉ ମୁଁ ତୋର କି ସାଙ୍ଗ ? ଅଞ୍ଜଳି କଣ୍ଠରେ ଅଭିମାନର ପଞ୍ଚମ ।

ସୁଜାତା କହିଲା, ତୋତେ ନ କହିବତ ମୁଁ ଆଉ କହିବି କାହାକୁ ?

ଆଜି କ'ଣ କିଏ ତୋର ନାହିଁ ।

ନାହିଁ ଅଞ୍ଜଳି !

ହଁ, ଅଛି । ଆଉ ସେ ହେଉଛନ୍ତି ତୋର ପ୍ରେମ !

ଲାଜରେ ସୁଜାତାର ମୁହଁ ତଳକୁ ହୋଇଗଲା । ସେ କହିଲା, ମୋର କାହାଣୀ ଅତି ଆକସ୍ମିକ, ଅତି ମଧୁର ଓ ଆଦର୍ଶମୟ ।

ଆଜି, ତୋର ଏତେ ଇଣ୍ଟ୍ରୋଡକ୍‌ସନ, ଏତେ ମୁଖବନ୍ଧ, କହ ନାଁ ଘଟଣାଟି ମୁଁ ଶୁଣେ !

କେମିତି କହିବି ? ଜୀବନର ସେ ସୁଦୀର୍ଘ ଅନୁଭୂତି ଏତେ କମ୍‌ ସମୟ ଭିତରେ ।

ତେବେ···

ନିଶ୍ଚୟ ତୋତେ କହିବି ଅଞ୍ଜଳି ! କିନ୍ତୁ କହ, ତୁ ମୋତେ ଏଥିରେ ସାହାଯ୍ୟ କରିବୁ କି ନାଁ ?

ପାରୁ ପର୍ଯ୍ୟନ୍ତ ସାହାଯ୍ୟ କରିବି । କହିବୁ ଯେବେ ମୁଁ ତୋର ତାଙ୍କୁ ଧରାଇ ଆଣି ତୋ ନିକଟରେ ପହଞ୍ଚାଇ ଦେବି ।

କେମିତି ?

ମୁଁ କମିଆଁ ଜାଣେ ।

କମିଆଁ କ'ଣ ?

ଆଚ୍ଛା, କହତ ସେ କେଉଁଠି ରହନ୍ତି ?

କଲେଜ୍‌ ହଷ୍ଟେଲରେ ।

କାହିଁକି ?

ତାଙ୍କର ପରିଚୟ ନେଇସାରି ମୁଁ ମୋର ପ୍ଲାନ୍‌ ଗଢ଼ିବି । ବ୍ୟସ୍ତ ହୁଅ ନାଁ । ମୋର ସାଙ୍ଗ ଭରସା ଥାଉ. ଏ ପ୍ରଭେ । ତୋର ସେ କ'ଣ ପଢ଼ନ୍ତି ?

ସାଇନ୍‌ସ ।

ଓଃ, ଦେଖୁଚି ତ ମୁସ୍କିଲ ପାଠ, ଆଚ୍ଛା ମୁଁ ବୁଝି ସବୁ ଆଗେ ପ୍ଲାନ କରେ । ପରେ ତୋତେ ଜଣାଇବି ।

କେତେଦିନ ପରେ ?

ତୁ ଏତେ ଅଧୀର ହୁଅନାଁ ସୁଜାତା···ମୁଁ ତାର ବନ୍ଦୋବସ୍ତ କରି ତମ ଘରକୁ ଯିବି । ଆଚ୍ଛା, ତମ ଘର ଟଙ୍କାଳା ସକାଳଣି !

ହଁ, ଜାନୁଆରୀରେ ତାର ପ୍ରତିଷ୍ଠା । ବାପା ମଧ୍ୟ ଏ ବର୍ଷ ବ୍ୟବସାୟରେ ପ୍ରଚୁର ଲାଭ କରିଛନ୍ତି । 'ଅଷ୍ଟିନ୍‌' ଗୋଟିଏ କିଣାହେବ ।

'ତା' ହେଲେ ତ ତୋର ମଜା—ଅଷ୍ଟିନ୍‌ ଧରି ଛୁଟିବୁ ପ୍ରେମିକଙ୍କ ପାଖକୁ—କହିବୁ ପ୍ରିୟ—ଏ ନୂଆ ମଟର ନିଅ ।

ହେଁସି ଦେଇ ସୁଜାତା କହିଲା, ତୋର ଖାଲି ଥଟ୍ଟା···ହେଇତ ଘଣ୍ଟା ବାଜିବାକୁ ଆଉ ଦଶ ମିନିଟ, ଏଇକ୍ଷଣି ମିସ୍‌ ରାୟ ଆସି ପହଞ୍ଚିବେ । କେହି ସିଟରୁ ଉଠିଯାଇଥିବାର ଦେଖିଲେ ଖାରି ଖୁଣ୍ଟା ଦେବେ ।

ହଁ, ସୁଜାତା···ତାଙ୍କର ଖାଲି ଦୃଷ୍ଟି କିଏ କେଉଁଠିକି ଗଲେଣି, କିଏ Love କଲା, କିଏ କା ସହିତ ଦେଖାକଲା, ସିନେମା ଗଲା, ଏଇ ସବୁ ଆଉ—ଆପଣାର ଗୁଣ ତ ଖାଲି ବକଶି ଉଠୁଚି ବସୁ-ବଳାସି ତାଙ୍କୁ ନେଇ···ଆମ ଭାଇ ଏବଂ ତାଙ୍କର ଦଳେ ବନ୍ଧୁ ଭବନେ ଏମିତି ଘଟଣା ସବୁ କହୁଥିଲେ—ଦୈବାତ ଶୁଣିଲି, ମତେ ପଚାରୁଥିଲେ । ମୁଁ ଆଉ ତା' ଆଗରେ ମାନିଲି ନାହିଁ, ତେଣୁ କେତେଟା କଥା କହିଦେଲି ।

ତା ପାଣିରେ ତ ଲୁଣ ମିଳାଏ ନ, ଦେଖ ଅଞ୍ଜଳି, ଏ କଥାର ଟେର ସେପରି କେହି ନ ପାନ୍ତି ।

ଚନ୍ଦ୍ର ସୂର୍ଯ୍ୟ ମଧ୍ୟ ଜାଣି ପାରିବେନି ।

ଏତିକିବେଳେ ଦପ୍ତରୀ ଆସି କହିଗଲା । କ୍ଲାସ ବନ୍ଦ । ସ୍କୁଲ ଛୁଟି ହୋଇଗଲା ।

ପିଲାମାନେ କ୍ଲାସ ଛାଡ଼ିଗଲେ ।

ବସି ରହିଲେ ସୁଜାତା ଓ ଅଞ୍ଜଳୀ । ଅଞ୍ଜଳୀର ହାତ ଧରି ସୁଜାତା କହିଲା, ସେଦିନୁ ଅଞ୍ଜଳୀ ତାଙ୍କୁ ମୁଁ ଟିକେ ମୁକ୍ତ ଓ ସ୍ୱାଧୀନ ଭାବରେ ଦେଖିବାକୁ ପାଆନ୍ତି—

ଥାଉ ଧର, ଆଛା କହିଲୁ ଚଠେ ମନ ବୁଝିଲେ ?

ନୀରବ ରହିଲା ସୁଜାତା । ତାର ନୀରବତାକୁ ସମର୍ଥନ କଲା ମୁହଁର ଲଜ୍ଜାରାଗ ଓ ଓଠର ମୃଦୁସ୍ମିତ ।

ହୁଁ...ଆଖିବୁଜି ମଞ୍ଜାରୀ ଦୁଧ ପିଉଛି—କାହିଁକି ? ଅଞ୍ଜଳି ତ ମଞ୍ଜାରୀ ନାଁଉ ଧରିଲାଣି ! ଦୁହେଁ ହସି ଉଠିଲେ ।

× × ×

ଛୁଟିପରେ ସୁଜାତା ଘରକୁ ଗଲା । ପଢ଼ାପଢ଼ିରେ ଆଦୌ ମନ ଲାଗେ ନାଁ । ସେ ଦିନ [illegible] ଟିକେ ଡେରିରେ ଆସିଲେ । ସୁଜାତା ନୀରବରେ କେତେ କ'ଣ ଭାବୁଥାଏ । ଅଞ୍ଜଳୀର ଛତଶ୍ରନ୍ତ, ଭୁବନର ହସ ହସ ମୁହଁ, ଗାର୍ଲସ୍କୁଲର ଆଦବ କାଇଦା ଆଜି ଉଭୟଙ୍କ ମଝିରେ ଅବୁଝା ବ୍ୟବଧାନ ଓ ପ୍ରତିବନ୍ଧକ ।

କେତେବେଳେ [illegible] ଆସି ବସିଲେଣି, ତାକୁ ଜଣାନାହିଁ । ସେ ତାର ଭାବନା ଭିତରେ ବୁଡ଼ି ରହିଛି । ଦୀର୍ଘଶ୍ୱାସଟିଏ ପକାଇଲା ବେଳକୁ ତାର ନିଜତ୍ୱବୋଧ ଆସିଲା । ଦେଖିଲା ବିନୋଦ ତାକୁ

ଚାହିଁ କ'ଣ ଭାବୁଛନ୍ତି ? ପଚାରିଲେ, 'ସୁଜାତା···ମୁଁ ତମକୁ କେତୋଟି ପ୍ରଶ୍ନ ପଚାରିବାକୁ ଚାହେଁ । ଉତ୍ତର ଦେବାକୁ ହେବ···'

ସୁଜାତାର ମୁଣ୍ଡରୁ ଅତସୀ ଖସି ପଡ଼ିଲା । ସେ କିଛି କହି ପାରିଲା ନାହିଁ । ଆଖି ଲୁହ ଝର ଝର ହୋଇ ଆସିଲା । ସେ ତାଙ୍କ ମୁହଁକୁ ଚାହିଁ ପାରିଲା ନାହିଁ ।

ପୁଣି ସେଇ ପ୍ରଶ୍ନ ପଚାରିଲେ ।

ବହୁତ ସମୟ ନୀରବ ରହିବା ପରେ ସୁଜାତା କହିଲା, 'ହଁ, ପଚାରି ପାରନ୍ତି ।'

ବିନୋଦ କହିଲା, 'ସୁଜାତା, କିନ୍ତୁ ତମକୁ ସତ କହିବାକୁ ହେବ ?'

'ମୁଁ ତ ଆପଣଙ୍କ ଆଗରେ କେବେହେଲେ କିଛି ମିଛ କହେ ନ ··· ··'

ବିନୋଦ ଟିକିଏ ଭାବିଲା । କହିଲା, 'ଦେଖ ସୁଜାତା, ମୁଁ ତମର ଗତିବିଧି ଲକ୍ଷ୍ୟ କରି ଦେଖୁଛି ଯେ ମନର ଗତି ଅତି ବିଲକ୍ଷଣ । ତୁମେ ବରାବର ଅନ୍ୟମନସ୍କା ହେଉଚ ଏବଂ ପୂର୍ବପରି ପଢ଼ାଶୁଣା କରିବାକୁ ଆଜି ସେମିତି ତୁମର ବିଶେଷ ଆଗ୍ରହ ନାହିଁ··· ଏ ସବୁ କାହିଁକି ଘଟୁଚି, ସୁଜାତା ?'

'ମୁଁ କିଛି କହି ପାରିବି ନି ସାର !'

'ଲଜ୍ଜାବୋଧ କରନା, ମୁଁ ବୁଝିଛି ତୁମର ଜୀବନରେ ସାଥୀର ଆହ୍ୱାନ ଆସିଲାଣି । ଛଳନା କଲେ ସୁଦ୍ଧା ତାହା ସ୍ୱତଃ ସ୍ପଷ୍ଟ ଜଣା ପଡ଼ୁଚି । ତୁମେ ମିଛା ଟିଉଟରକୁ ଛଳନା କରି ଆତ୍ମଗୋପନ କରୁଚ । କିନ୍ତୁ ତୁମର ହୃଦୟ ବନ୍ଧାପଡ଼ିଚି ଅନ୍ୟ ଜଣକ ନିକଟରେ । ତୁମର ହୃଦୟ ଆଉ ଆତ୍ମଗୋପନ କରି ନାହିଁ । କହି ପାରିବ କି କିଏ ସେ

ହତଭାଗ୍ୟ ଜୀବନଟିଏ—ଯିଏ ନିଜର ଭବିଷ୍ୟତର ସର୍ବନାଶ କରି ତୁମ ଜୀବନର ସର୍ବନାଶ କରିବାକୁ ବସିଛି ?'

'ଏ କ'ଣ କହୁଛନ୍ତି [illegible]...ମୁଁ ତ ଆପଣଙ୍କୁ...'

'ହଁ, ଆପଣଙ୍କୁ ଗୁରୁତୁଲ୍ୟ ମାନେ—'

ସୁଜାତାର ପୂର୍ବ ଘଟଣା ମନ ଭିତରେ ଉଦିତ ହେଲା । ସେ ଛଳ ଛଳ ନୟନରେ କହିଲା, '[illegible], ମୋତେ କ୍ଷମା କରିବେ ।'

'କ୍ଷମା ମୋର ଦେୟ ନୁହେଁ । ତୁମର ହୃଦୟ ହିଁ ତୁମକୁ କ୍ଷମା ଦେବ । ସତ କୁହ, ତୁମର ଜୀବନର ଗତି ଏତେ ବ୍ୟସ୍ତ, ଅଧୀର କଲା କିଏ ? ମୁଁ ସେଇ ଦୁରଦୃଷ୍ଟ ନୁହେଁ ତ !'

'ନା [illegible]!'

'ତେବେ ସେ କିଏ ଆଉ ଜଣେ ?'

ସୁଜାତା କୌଣସି ଉତ୍ତର ଦେଲା ନାହିଁ ।

ବିନୋଦ ମନେ ମନେ କହିଲା, ସୁଜାତା ତ ପୁଣି ଛଳନା କଲା । ପଚାରିଲା, 'ଯେବେ ତୁମର ସେପରି କିଛି ଧାରଣା ଆସିଥାଏ, ତା' ଭୁଲ—ହେଇ ଦେଖ, ନିଅ ତୁମର ଚିଠି—କିନ୍ତୁ କୁହ, ତୁମର ହୃଦୟ ତୁମର ହୋଇଅଛି କି ନାଁ '

'ମୋ ହୃଦୟ ମୋର ହୋଇ ଅଛି । ଆପଣ କିନ୍ତୁ...'

'ଆପଣ କିନ୍ତୁ କିଛି କହୁଛନ୍ତି ନାଁ ? ସୁଜାତା, ବିନୋଦର ଅନୁମାନ କେବେ ବିଫଳ ହୁଏ ନି । ତୁମେ ଆଜ ସତ ଘଟଣା ନ କହିଲେ ସୁଦ୍ଧା ମୁଁ ମୋର ଅନୁମାନ ଉପରେ ପ୍ରତିଷ୍ଠିତ ରହି ତମର ଭବିଷ୍ୟତର ବ୍ୟବସ୍ଥା କରି ଦେବି ।'

କାରଣ, ସେଇଟା ମୋର କର୍ତ୍ତବ୍ୟ । ମୁଁ ଏଠିକି ପ୍ରେମପ୍ରୀତି ପାଇଁ ଆସି ନାହିଁ କିମ୍ବା ନୂତନ କ୍ଷୁଧାରେ ତୁମର [illegible] ହୋଇନି ।

ମୁଁ ଅଭାବଗ୍ରସ୍ତ, ଆସିଥିଲି ଅଭାବ ମେଣ୍ଟାଇବା ପାଇଁ । କାଲି ସକାଳେ ହୁଏ ତ ମୁଁ ବିଶ୍ୱବିଦ୍ୟାଳୟର ଜଣେ ସାମାନ୍ୟ ଗ୍ରାଜୁଏଟ ହୋଇ ପାରିବି । ପୁଣି ମୋ ଉପରେ ବଞ୍ଚିବା ପାଇଁ ଉପାସ୍ଥ ଚିନ୍ତା କରିବାର ଗୁରୁତର ଦାୟିତ୍ୱ ପଡ଼ିବ । ଆଜି ହୁଏତ ତୁମ ସାଙ୍ଗରେ ଦେଖା ହୋଇ ନ ପାରେ । ମୁଁ ତୁମର ଉତ୍‌ଥାନ ପତନ ଦେଖିଛି । ଦେଖିଛି, ତୁମରି ଏଇ ଘର ଦିନେ ଥିଲା ଝୁପର ଗୃହର ··ଆଜି ତାହା ସୁନ୍ଦର ଦ୍ୱିତଳରେ ପରିଣତ ହୋଇଛି । ରିକ୍‌ସାରେ ତୁମେ ଯିବା ଆସିବା କରୁଥିଲ, ଏବେ ଅଷ୍ଟିନ୍ କିମ୍ବା ଷ୍ଟୁଡିବେକର ଦରକାର ପଡ଼ିବ । ତୁମର ମାନସିକ ଅବସ୍ଥା ମଧ୍ୟ ସେଇପରି । ତୁମେ ତ ଆଜି ବାରବର୍ଷର ସୁଜାତା ନୁହଁ ଯେ ମୁଁ ତମକୁ ରୂପକଥା କହି ଭୁଲାଇ ରଖିବି ?'

'[illegible], ଆପଣ ଆଜି କାହିଁକି ଏ ସବୁ ଗପ କହୁଛନ୍ତି ?'

'କହୁଛି ଆଜି [illegible]ର ଜନ୍ମଦିନ । ଏଣିକି [illegible] ଭୟ ନାହିଁ କିମ୍ବା ତୁମର [illegible] ଦାୟିତ୍ୱ ନାହିଁ । କାଲିଠାରୁ ତୁମେ ଆଜି ଏକ ନୂତନ [illegible] ମୂର୍ତ୍ତି ଦେଖିବାକୁ ପାଇବ । ତୁମର ଦାୟିତ୍ୱ ମୁଁ ନେଇଥିଲି, ଏ ଦାୟିତ୍ୱଟା ନ ନେବି କାହିଁକି ? ତୁମେ ଆଜି ନିଜକୁ ଏତେ ଶୀଘ୍ର ଜଳାଇ ପୋଡ଼ାଇ ମାରିବାକୁ କାହିଁକି ଚେଷ୍ଟା କରୁଛ ? ସତ ଘଟଣା କ'ଣ କୁହ ? ମୁଁ ତମର ମା'ଙ୍କୁ କହି ସବୁ ବନ୍ଦୋବସ୍ତ କରି ନେବି ।'

'[illegible], ମୋତେ କ'ଣ ଭୁଲ ବୁଝୁଛନ୍ତି । ଆପଣ ଯାହା ସନ୍ଦେହ କରୁଛନ୍ତି, ଠିକ୍ ନୁହେଁ ।'

'ଠିକ୍ ନୁହେଁ ସୁଜାତା, ଠିକ୍, ଠିକ୍ ଅକ୍ଷରେ ଅକ୍ଷରେ ସତ । ତୁମର ହୃଦୟ ବିଚଳିତ ହୋଇ ପଡ଼ିଛି ।'

ତୁମେ ଆଶ୍ରୟ ଖୋଜୁଚ କଲୁ ମୋ ଆଗରେ ଲୁଚାଇବା ପାଇ ତୁମର ଚେଷ୍ଟା ବୃଥା । ମୁଁ ତୁମର ମା'ଙ୍କ ସହିତ ଏ ବିଷୟରେ ଆଜି ଆଲୋଚନା କରି ଆସିଛି । ସତ କହିବାକୁ ପଡ଼ିବ ।'

'ମୁଁ ମିଛ କହିବିନି !'

ସୁଜାତାର ମୁଣ୍ଡ ଭୁମି ଗଲାଣି ।

ବିନୋଦ ପଚାରିଲା, 'ଲୁଚାଇବ ନାହିଁ କମ୍ପା କହି ପାରିବ ନାହିଁ । ତୁମେ କ'ଣ···'

[illegible] ସବୁ ଆଶଙ୍କା ବୃଥା ।'

'ମିଛ କଥା—ତୁମର ଅଭିମାନ, ଲଜ୍ଜା ଏବଂ ଦମ୍ଭ ଦିନେ ନାଁ ଦିନେ ଏଇ ପ୍ରଣୟ ପାଇଁ ଧରା ପଡ଼ିବ । ବିନୋଦ ପରୁଛନ୍ତି—ତୁମେ ଆତ୍ମଗୋପନ କରୁଚ । ଏଣିକି ଯାହାର କଳ କୌଶଳରେ ତୁମେ ଧରା ପଡ଼ିବ, ସେ ତୁମର ଯଥେଷ୍ଟ ଉନ୍ନତି କରିବ । ଜୀବନର ସେଇ ଘଡ଼ସନ୍ଧି କ୍ଷଣରେ କିଛି ଯେବେ ଘଟିଯାଏ, ମନେ କରିବ ସୁଜାତା, ବିନୋଦ କାହିଁକି ତୁମର ହୃଦୟର କଥା ଜାଣିବାକୁ ଚାହୁଁଥିଲା··· ଆଚ୍ଛା, ମୁଁ ଆସେ···

'ଆପଣ କ'ଣ ସତେ ଆଉ ଆସିବେ ନି ?'

'ନାଁ···'

'ବଡ଼ ନିଷ୍ଠୁର ଆପଣ । ଆସନ୍ତା ପରୀକ୍ଷାରେ ମୁଁ କ'ଣ କରିବି ?'

'ପାଠ ପଢ଼ିବ ମନ ଦେଇ । ପାସ୍ କରିବ ।'

ଏତିକିବେଳେ ସୁଜାତାର ମା ପହଞ୍ଚିଗଲେ । ବିନୋଦ ଉଠି ଠିଆହେଲା । କହିଲେ, 'ସୁଜାତା, ନିଅ ତୁମର କାଗଜଟା···'

ଥର ଥର ହାତରେ ସୁଜାତା ଚିଠିଟା ନେଇ ରଖିଲା । ତାର ମା ପଚାରିଲେ, 'ବିନୋଦ ବାବୁ···'

ଶଶୀକାନ୍ତ ବିନୋଦ ଏତକ କହିଲା, 'ମୁଁ ଯାହା କହୁଛି, ସେ ବିଷୟରେ ଚେଷ୍ଟା କରୁଛନ୍ତି—'

'ଆଚ୍ଛା, ତା' [illegible] ଆଉ [illegible] —'

'[illegible]'

ସେ କେମିତି ସନ୍ଦେହ ଚକ୍ଷୁରେ ବିନୋଦ ଓ ସୁଜାତାକୁ ଚାହିଁଲେ ଓ ଚାଲିଗଲେ ।

ବିନୋଦ କହିଲା, 'ସୁଜାତା, ମୁଁ ଚାଲିଯାଉଛି ଖାଲି ଦୁଃଖେ, ତୁମର ଛଳନାକୁ ନେଇ । ଏତେଦିନ ଯାହାକୁ ଗଢ଼ିଲି, ସେ ମୋତେ ଭୁଲାଇ ଦେଲା ଆଜ ଛଳନା କରି । ପ୍ରକୃତ ହୃଦୟର କଥା—ସତ କଥା ମୁଁ ତା'ଠାରୁ ଆଦାୟ କରି ପାରିଲି ନାହିଁ, ଏହାହିଁ ମୋର ଦୁଃଖ ··'

'ଆଜ ଶୁଣ ତୁମର ହୃଦୟରେ ପ୍ରେମ-ବ୍ୟାଧି ଦେଖା ଦେଇଛି । ସୁଶୀଳ ପରି ସ୍କଲରର ଭାଗ୍ୟରେ ମଧ୍ୟ ଫେଲ୍ ଥିଲା, ଏଇ ପ୍ରେମ ପାଇଁ—ନିରୁପମାର ଭାଗ୍ୟରେ ଥିଲା, ସୁଦୂର ପୁରପଲ୍ଲୀର ନିଭୃତ କୋଣରେ ମା' ହୋଇ ପୁଣି କୁମାରୀ ଅବସ୍ଥାରେ ପୁଣି ଜଟିଳ ଜୀବନ କଟାଇବାକୁ । ପ୍ରମିଳା ଚିରକୁମାରୀ ରହିଲା ତାର ପ୍ରେମିକ ପାଇଁ—ପ୍ରବଞ୍ଚିତା ରଜନୀ ପୁଣି ସଂସାର କଲା ନିଜେ ସତୀ ସାଜି—ସୁରେଶ ଦେଲା ଫଳାଫଳ ସନ୍ଧ୍ୟାର ବିବାଦ ପରେ । ସୁଖାପ୍ଲୁତ ବନ୍ଧୁ ରତନ ଆଜ ଉଦ୍‌ଭ୍ରାନ୍ତ···ଶଶୀକାନ୍ତ କଲା ପୋଷ୍ଟାସିଅମ ଖାଇ ଆତ୍ମହତ୍ୟା—ଖରଣୀର ସଂସାର ଜଳପୋଡ଼ି ଗଲା ? ତୁମେ ପିଲା ଲୋକ—goue marriale ର ସାଧାରଣ ପରିଣତି ଓ ସମ ସଂଘର୍ଷ ବିଷୟ ନେଇ ତୁମର ମୋଟେ ଧାରଣା ଅଛି ନା । ବେଳଥୁଁ ସାବଧାନ ନ ହେଲେ, ତୁମର ପରିଣତି କ'ଣ ହେବ ସୁଜାତା, ଭଗବାନ ଜାଣନ୍ତି । ସେ ତୁମର ମଙ୍ଗଳ କରନ୍ତୁ । ଏହାହିଁ ମୋର କାମନା ।'

ସୁଜାତା ଚମକି ଉଠିଲା । ଓଷ୍ଠ ଥରିଲା, ଭୃକୁଣ୍ଡି କୁଞ୍ଚିଗଲା, ଝାଳ ମାରିଲା ସାରା ଦେହ । ସେ ଖାଲି ଚାହିଁ ରହିଲା, ବିନୋଦର ଉଦାସ୍-ବିଧୁର ମୁହଁଟିକୁ ।

ବିନୋଦ କହିଲା, 'ମୁଁ ଯାଉଛି ।'

ଚେଆର ଗାଡ଼ି ନେଇ ବାହାରିଲା । ସାଙ୍ଗରେ ସୁଜାତା ଆସୁଛି । ରାସ୍ତା ଉପରେ ଘର । ଚାରି ବର୍ଷର ମାୟା ମମତା ତୁଟାଇ ବିନୋଦ ଏ ପରିବାରଟିକୁ ଛାଡ଼ି ଯିବ । ସେଥିପାଇଁ ତାର ଦୁଃଖ ନାହିଁ । ଦୁଃଖ କେବଳ, ସୁଜାତାକୁ ସେ ଯେଉଁ ପରିସ୍ଥିତିରେ ଦେଖି ଯାଉଛି, ସେ ପରିସ୍ଥିତିର ପରିଣତି ବିଷୟରେ···

ସୁଜାତା ନମସ୍କାର କଲା । ବିନୋଦ ହସି ହସି ପଚାରିଲା, 'ଏଇଟା ଛଳନା ନୁହେଁ ତ···'

ବୋଲି କହି ସୁଜାତା ବିନୋଦର ଉଦାସ୍-ବିଧୁର ଆଖିକୁ କରୁଣ କାତର ଭାବରେ ଚାହିଁ ରହିଲା ।

ବିନୋଦ ରାଜପଥ ଧରିଲା—

ପଥ ଚାହିଁଲା ସୁଜାତା···ବିନୋଦ ରାଜପଥରେ ଚାଲି ଯାଉଛି ଆଉ ତା' ଭିତରେ ଜାଳି ଦେଇ ଯାଉଛି ଅସହଣି ନିଆଁ ।

× × ×

ରାତି ସାରା ଛଟ ପଟ ହୋଇ ସୁଜାତାକୁ ନିଦ ଆସିଲା ନି । ଏଇ ଦିନଟିର ଦୁଃଖ ଗୁଡ଼ିକ ତାର ହୃଦୟକୁ ଆହୁରି ଚଞ୍ଚଳ କରି ପକାଇଲା । ଅଞ୍ଜଳୀର ଆଶା ଆଶ୍ୱାସନା—ବିନୋଦ ବାବୁଙ୍କର ସତର୍କବାଣୀ ଏବଂ ଉଦାସ୍ ବ୍ୟଥା—ସବୁ ଯେମିତି ଜୀବନ ମଞ୍ଚରେ ପ୍ରହେଳିକା ଓ ସ୍ୱପ୍ନ ପରି ଜଣାଗଲା । ଭୁବନର ଚିଠି ପାଇ ସେ ଉତ୍ତର ଦେଇନାହିଁ । ହୁଏତ ସେ ବ୍ୟସ୍ତ ବ୍ୟଥିତ ହେଉଥିବେ ।

କିଛି ଭଲ ଲାଗୁନି । ସୁଜାତାର ମନରେ ଚିନ୍ତା ଗୁଡ଼ାଏ ଜମି ଯାଉଛି । ରାତି ପ୍ରାୟ ୩ ବାଜିବା ଉପରେ । ଶୀତ ଦିନ । ଶୋଇବାକୁ ଆଖି ରାଜିହୁନି । ହୃଦୟର ବ୍ୟଥାକୁ ଲଘୁ କରିବା ପାଇଁ ସେ ଚିଠି ଲେଖିବାକୁ ସ୍ଥିର କଲା···ଲାଇଟ୍ ମାରି ସେ ଲେଖି ବସିଲା—

ପ୍ରିୟତମ,

କଣ ଲେଖିବି କିଛି ଭାବି ପାରୁନି । କଲମ ମୁନ ବନ୍ଦ ହୋଇ ଯାଉଛି । ଆଖି ଦିଟାକୁ ତ ଦିଶୁନି — ଲୁହ ଜମି ଯାଉଛି । ହୃଦୟ ଜଡ଼ ପାଲଟିଛି । ମୋର ଭାଷା ନାହିଁ, ଭାବ ନାହିଁ—ମୁଁ ଗୋଟିଏ ନିରାଶ୍ରୟ ପ୍ରାଣୀ ।

କିଛି କହିବି ନାହିଁ ଭୁବନବାବୁ, ଜାଣେ ନି । ଆପଣଙ୍କୁ ମୁଁ କାହିଁକି ଏତେ ଭଲ ପାଇଲି । ଏତେ ନିଜର କରି ହୃଦୟ ବିକଲି । ହୁଏତ ଆମର ଏ ସମ୍ପର୍କ ଜନ୍ମ ଜନ୍ମଧରି, ଯୁଗ ଯୁଗଧରି ଚାଲି ଆସିଛି—ନିତ୍ୟ, ସତ୍ୟ, ଶାଶ୍ୱତ ଓ ସୁନ୍ଦର । ଆପଣ କ'ଣ ସତେ ମତେ ଏତେ ଭଲ ପାଆନ୍ତି ? ଜାଣେନି—ଆପଣଙ୍କ କଥା ଭାବିବାରେ ଏ ଦୁଃଖିନୀ ହୃଦୟର କି ଅଧିକାର ଅଛି । ଆଉ କାହିଁକି ଭାବିଲେ, ଏ ହୃଦୟ ଆନନ୍ଦରେ ପୂରି ଉଠୁଛି ।

ଯେଉଁଦିନ ଆପଣଙ୍କୁ ଦେଖିଲି, ଦେଖିଲି ମାତ୍ରେ ଜୀବନ ଯୌବନ ସବୁ ଉଜାଡ଼ି ଦେଲି ଆପଣଙ୍କ ଶ୍ରୀଚରଣ ତଳେ । କି ଯୋଗରେ କାହିଁକି ମୋତେ ଦେଖା ଦେଲେ ? ପୁଣି ଦେଖା ଦେଇ ଦେଖା ଦେଉ ନାହାନ୍ତି ? କାହିଁକି ବେଳେବେଳେ ଏ ପ୍ରାଣକୁ ଏତେ ଦନ୍ଦରାଣି କରି ମାରୁଛନ୍ତି—ବୋଧହୁଏ ଭାବୁଛନ୍ତି, ମୋର ହୃଦୟ ଅଟଳ ରହିବ କି ନା ? ମୋତେ ପରୀକ୍ଷା କରୁଛନ୍ତି । ଅନ୍ତରାଳରେ ରହି ମୋର ଜୀବନର ଆର୍ତ୍ତ ହାହାକାର ଦେଖି କି

ସୁଖତୃପ୍ତି ଆପଣ ଲଭୁଛନ୍ତି କେଜାଣି, ତା ମୁଁ ଜାଣି ପାରୁନାହିଁ । ତଥାପି ଆପଣଙ୍କ ଯେ ଇଚ୍ଛା ।

ଆପଣଙ୍କ ସହିତ ଚିଠିପତ୍ର ସମ୍ପର୍କ ବୋଧହୁଏ ମୋର [illegible] ଜାଣି ସାରିଲେଣି । ଶୁଣିଲି, ସେ ମଧ୍ୟ ଆମ୍ଭ ଉଭୟଙ୍କୁ ଏ ବିଷୟ କହି ଦେଇଛନ୍ତି । [illegible] ମୋର ମଙ୍ଗଳ । [illegible] ଆସିଲେ ଏ ରହସ୍ୟ ଭେଦକରି ପାରିବ ନାହିଁ ।

ଆଶାରେ ଭଲ ଥିବେ । ଚିଠି ଦେବେ ।

ସୁଜାତା

ଚିଠି ମୁଡ଼ଦେଇ ସେ ତାକୁ ଛାତି ଉପରେ ଭିଡ଼ି ଧରିଲା । ତୃଣସ୍ପୃପିପାସୁ ବକ୍ଷ ତାର ଆସ୍ୱାଦନ କଲା ପ୍ରଣୟୀର ନୂତନ ସ୍ପର୍ଶ— ଚକ୍ଷୁ ତାର ଅର୍ଦ୍ଧ ନିମୀଳିତ ହୋଇ ଆସିଲା । ତାର ମନେ ହେଲା । ଜଗତର ସକଳ ଆନନ୍ଦ ଯେପରି ତାର ପ୍ରାଣ ମନ୍ଦିରରେ ଉଦ୍‌ବେଳିତ ହୋଇ ଉଠୁଛି···

* ଗୁରୁ *

ଭୁବନ [illegible]

ସତ ସତ ଧରି ଭୁବନ ଭାବୁଛି, ତାର ଜୀବନରେ ପ୍ରଣୟର ଏ ଅଦ୍ଭୁତ ଲୁଚକାଳି କାହିଁକି ? କାହିଁକି ସେ ସୁଜାତାକୁ ଭଲ ପାଇଲା—କି ରହସ୍ୟ ଥିଲା ସୁଜାତାର ଲେଖାଣିରେ, କି ମାଦକତା ଥିଲା ତାର ହୃଦୟରେ, କି ଅମୃତ ଥିଲା ତାର ଦେହେଇରେ ! ମୁଁ କେଉଁ ଅମୃତ ଯୋଗରେ ତାକୁ ପାନ କଲି—ବର୍ତ୍ତମାନ ମୋର ଅବସ୍ଥା ହେଲା ଚିର ପିପାସା ।

ସୁଜାତା···ନିଶୋଡ଼ ନିଦରେ ଶୋଇଥିଲେ ସେ ସୁଜାତାର ରୂପଦେଖି ଚମକି ଉଠେ । ଜାଗ୍ରତ ଅବସ୍ଥାରେ ଥିଲେ ସୁଜାତାର କଳ୍ପନାରେ ଅଭିଭୂତ ଥାଏ—ଭୁବନର ଶୟନ, ସ୍ୱପ୍ନ ଓ ଜାଗରଣ—ସବୁ ଯେପରି ସୁଜାତାମୟ···ସୁଜାତା ତାର ଚିରପିପାସିତ ଅଧରରେ ଅମୃତର ପରଶ ଆଣି ଦେଇଛି—ସେ ତାକୁ ସୁଧାଚକ୍ଷା 'ଗନ୍ଧ' ପରି କରିଛି । ସୁଜାତା, ସୁଜାତା—ସୁଜାତା······

ଭାବି ଭାବି ସେ କଲମ ଧରି ଲେଖିବସେ । ଝରଣା ପରି ତାର ହୃଦୟ, ଫୁଲପରି ନରମ ତାର ଅନୁଭୂତି ଆଉ ମଳୟ ପରି ମର୍ମରିତ ତାର ଅଭିବ୍ୟକ୍ତି···ସେ କଲମ ଧରି ବସିଛି । ଲେଖୁଛି ।

'ଯା, ଲଗି ବିଜନରାତି କଣ୍ଠେ ମୋ ତୋଳି ଗାନ
ମରମ ତଳେ ତାର ବାଜେ କି ସେଇ ତାନ
ଲୋତକ ଝରି ଝରି ପଡ଼େ ଗୋ ବକ୍ଷମୋର
ନିମିଷ ଲଗି ହୁଏ ସଜଳ କି ତା' ଡୋଳ
ମନ-ପଥିକ ଶିରେ ଯା'କଥା ବରି—ଛାଇ
ସେ କି ମୋ ଭାଳ ତଳେ ଆସେ ନିଭୃତେ ଧାଇଁ
ଜୀବନେ ହେଲା ସେ ମୋ ବରଷା ମଉସୁମୀ
ସ୍ମୃତିର ସଖି ସେ କି ହେବ ମୋ ଅନୁଗାମୀ—

ଭୁବନ ଆଉ ଲେଖି ପାରିଲା ନାହିଁ । ମନର ଅନ୍ତ ଗୁପ୍ତ କୋଣରେ ଜଳି ଉଠିଲା ଉଷାର ଅପୂର୍ବ ପରିଚୟ । ଉଷା ତାରି କ୍ଲାସମେଟ୍ ନୁହେଁ—ଉପର କ୍ଲାସରେ ପଢ଼େ । ବାଟରେ ଘାଟରେ କେବେ କାହିଁକି ସେ ତ ତାକୁ ଆଗରୁ କିଛି ପଚାରୁ ନ ଥିଲା । ଏବେ କାହିଁକି ଏତେ ଅଯାଚିତ ସ୍ନେହ···

ତେବେ ସେ କ'ଣ ତାକୁ ପ୍ରେମ କରିବା ପାଇଁ ଚେଷ୍ଟା କରୁଛି । ତା' ହୋଇଥିଲେ ସେ ତ ସୁଜାତାର ଶଠି ଅବା ନିଜେ ଆଣେନ୍ତା କାହିଁକି ?

ଏଇ କଲେଜରେ କେତେ ଅବା ଗାର୍ଲସ୍ ନ ପଢ଼ୁଛନ୍ତି । ଲାଭାର୍ଣ୍ଣାରେ ଝଣ୍ଡ ବ୍ଲାକବୋର୍ଡ଼ରେ ଲେଖା ହେଉଛି । କିଏ କେତେ ବେନାମୀ ଚିଠି ପାଉଛି, କା'ର ଅବା ପ୍ରେମ ପାର୍ଶଲ କେତେ ଆସୁଛି । କିନ୍ତୁ ଉଷା ? ଯାହାର ବଳିଷ୍ଠ ସ୍ୱାସ୍ଥ୍ୟ ବ୍ୟକ୍ତିତ୍ୱ ସୌନ୍ଦର୍ଯ୍ୟର ଗନ୍ଧ ସୁଧା ଉପଭୋଗ ନାହିଁ, ତା' ପାଇଁତ କେତେ ହେଲେ ଏବେ ବଦ୍‌ନାମି ଦେଉଛ...କି ତାର ଦୋଷତ୍ରୁଟିର ସମାଲୋଚନା କରନ୍ତି । ଶତଶତ ତରୁଣର ଲୋଲୁପ ଦୃଷ୍ଟି ଏବଂ ସୁବିଧାସୁଲଭ ଚପଳ ଦୁଷ୍ଟାମି ସତେ କ'ଣ ଉଷା ପାଇଁ ଏବେ ରୁଦ୍ଧ ?

ଆଜି ଏଇ କଲେଜ ଜଙ୍ଗଲର ଭୁଲ୍ଲିତର ଅବହେଳିତ ଫୁଲଟିଏ ତାର ହୋଇଛି ଦୁଷ୍ପ୍ରାପ୍ୟ— ? ? ?

ଭୁବନର ଭାବନା ଏମିତି ଆସେ । ମନେ ପଡ଼େ କେତେ କେତେ ଗାର୍ଲ୍, କଲେଜ ଷ୍ଟୁଡେଣ୍ଟଙ୍କ ସହିତ ଘଣ୍ଟା ଘଣ୍ଟା କି କଥାବାର୍ତ୍ତା କରନ୍ତି । ଭୁବନ କେବଳ ଦୁଇଗୋଟିପଦ ଶୁଣି ଚାଲି ଆସେ ।

ଉଷା କହେ, ମୋତେ ବିଶ୍ୱାସ କରିବାକୁ ଆପଣ ସଙ୍କୁଚିତ ହେଉଛନ୍ତି ?

ସେ ମନା କରେ ।

ତାର ଏଇ ଗଣ୍ଡିବଦ୍ଧ ଲକ୍ଷ୍ୟକରେ ବାସୁ । ବହୁତ ଚେଷ୍ଟା କରେ ଭୁବନକୁ ପୂର୍ବବାଟକୁ ଫେରାଇ ଆଣିବାକୁ । ବାସୁର ମତ, ଭୁବନ ପଢ଼ୁ । ଦେଶର ଜଣେ କୃତବିଦ୍ୟ ଯୁବକ ହୋଇ ବାହାରୁ ପ୍ରେମ ନିଶାରେ ଉନ୍ମତ୍ତ ନ ହୋଇ ସେ ହେଉ ଜଣେ ନେତା ।

ଭୁବନ ବାସୁର ଅମୂଲ୍ୟ ଉପଦେଶ ଶୁଣେ, ମାତ୍ର ପାଳନ କରେ ନାହିଁ । ସେଥିପାଇଁ ବାସୁ ସହିତ ତାର ବେଳେବେଳେ ଘମାଘୋଟ ଆଲୋଚନା ଚାଲେ ପ୍ରେମର ମୂଳତତ୍ତ୍ୱ ନେଇ । ବାସୁ କହେ, ପ୍ରେମ, କି ନାରୀ ଆମର ଗୋଟାଏ ନିହାତି ଆବଶ୍ୟକୀୟ

ଦ୍ରବ୍ୟ । ଗୋଟାଏ ନେସେସିଟି—ନେସେସିଟି ଉପରେ ଏତେ ରୋମାଣ୍ଟିକ କଲର ଦେଇ ତାକୁ ଅତି ଆଦର୍ଶବତ୍ ମନେ କରି ଜୀବନକୁ ଜାଲ ପୋଡ଼ି ମାରିବା ପାଷାଣ୍ଡର କାମ ।

ଭୁବନ ଅଟ୍ଟା କରେ । କହେ ବାସୁ, ତୁମେ ତ କେବେ ପ୍ରେମରେ ପଡ଼ିନାହଁ । ଜଣଙ୍କ ପାଇଁ ଜଣେ କମିତି ଝୁରେ, ତା ଜାଣି ନାହଁ, ବୁଝି ନାହିଁ, ସେ ତ୍ୟାଗର ମୂଲ୍ୟ କେତେ ମହତ୍ ଓ ଉଦାର । ନିରସ ତୁମେ, ତୁମେ ଏ କଥାର ଅବତାରଣା କର ନାହିଁ ।

ବାସୁ ବୁଝେନା—ବୁଝାଏ, ଶୁଣ ଭୁବନ, ଆମର ନେସେସିଟି ନେଇ ଏତେ କାହିଁକି ଆଦର୍ଶ ବଖାନ କରିବା, ଯାହା ଆସିବ ଆସୁ ।

ବାସୁର କଥା ଭୁବନ ବୁଝେନା କିନ୍ତୁ ଭୁବନର ବ୍ୟଥା ବାସୁ ବୁଝେ ।

ଦୁଇ ବନ୍ଧୁଙ୍କର ଏପରି ଜଣା ଅଜଣା ବିନିମୟ ଗହଳରେ ଦିନଗୁଡ଼ି କଟିଯାଏ । ବାସୁ ବୁଝେଁ, ଭୁବନର ଆଶୁ ପରିଣତି···ସେ ଉପାୟ ଚିନ୍ତା କରେ । ଉଷା ସମ୍ବନ୍ଧ ନିଜେ ଦି'ପଦ କଥାବାର୍ତ୍ତା କରି ବିଶେଷ ଯୋଜନା କରିବାକୁ ମନେ ମନେ ଅଗ୍ରସର ହୁଏ, କିନ୍ତୁ ଉଷା ସମ୍ବନ୍ଧ ବାସୁର ପରିଚୟ ମିଳେ ନାଁ···ସେ ଉଷାର ମନ ଖୋଜେନାଁ ।

ଭୁବନ ଜାଣେନା ବାସୁ କାହିଁକି ଉଷାର କଥା ଏତେ ପଚାରେ । ସେ ବୁଝେ, ବାସୁ ବୋଧହୁଏ ତାର ପରି ଅନ୍ଧ ପ୍ରଣୟର ଭିକାରୀ । ମନେ ମନେ ହସି ଉଠେ । କହେ, ବାସୁର ଆଦର୍ଶ ନାହିଁ, ସେ କେବଳ ଗୋଟିଏ ରାତିର ସାଥୀ···

ଇମିତି କ'ଣ କେତେ ଭାବୁଚ, ବାପ୍ପୁ ଆସି ପହଞ୍ଚିଲା । ଭୁବନର ସ୍ୱପ୍ନ ଭାଙ୍ଗିଗଲା । କହିଲା, ଭୁବନ···କ'ଣ ଗୁଡ଼ାଏ ଭାବ ଯାଉଚୁ ।

ନାହିଁ କିଛି ନାହିଁ ।

ବାପ୍ପୁର ଦୃଷ୍ଟି ପଡ଼ିଲା ଖଣ୍ଡେ ନେଳିଆ କାଗଜ ଉପରେ । ସେ ଟାଣି ନେଲା । ଭୁବନ ତା'କୁ ବାଧା ଦେଲା । ତଥାପି ସେ ବାଧା ସାମାନ୍ୟ । ବାପ୍ପୁ ପଢ଼ିଲା । କବିତା···କବିତା···ପ୍ରେମ କବିତା···ସ୍ୱପ୍ନ ଆଖିର ନତ ଝୁରିବାର କଥା···ତରୁଣ ହୃଦୟର ବ୍ୟଥା କବିତା—ସରସ ଯୌବନର ଗୀତ କବିତା··· କ···ବି···ତା ।

କହିଲା, ମୁଁ ବେଶ୍ ବୁଝିଲିଣି, ତୁ ଆଉ ଏ ଜଗତରେ ନାହୁଁ । କଳ୍ପନାର ଉଡନ୍ତ ଆନନ୍ଦରେ ପ୍ରଣୟ ବିଭୋର ହେଲୁଣି । ତେବେ କହ ବନ୍ଧୁ ତୁମେ ପ୍ରଣୟିନୀଠାରୁ ସେହିପରି ସମାନ ପ୍ରତିଧ୍ୱନି ପାଉଛ ତ ?

ତୋ ଆଗରେ ମୋର ଲୁଚାଇବାକୁ କିଛି ନାହିଁ ବାପ୍ପୁ, ସୁଜାତା ମୋର ମୂଲ୍ୟ ବୁଝେ—

ହଁ ବିଶେଷ ଖେଳାଳି ଭାବରେ ମଧ୍ୟ ମୁଁ ବୁଝେ ତୋର ମୂଲ୍ୟ, ଆଉ ସେ ଯେଉଁ ଉଷା, ସେ ତୋର ମୂଲ୍ୟ ବୁଝେ ତୋର ଚେହେରା ଦୃଷ୍ଟିରୁ—ତୋର ମୂଲ୍ୟ ଦିଏ ହେମନ୍ତ, ତୋ ବଡ଼ଲୋକି ପାଇଁ···

ବାପ୍ପୁ, କିନ୍ତୁ ମୁଁ କହେ ବାପ୍ପୁ ମୋର ମୂଲ୍ୟ ବୁଝେ ତାର ବନ୍ଧୁ ପରି ତୋ ଆଗରେ ମୋର ହୃଦୟ ପଡ଼ି ରହିଛି—ଖୋଜି ଦେଖ ।

'ମୁଁ ଦେଖୁଚି ତୁମେ ନିକଟରେ I. Sc. ପରୀକ୍ଷା ପାଇଁ ପାଠ୍‌ ପଢ଼ି କଳ୍ପନା କରୁଁଛ ?

'କମିତି କରିବି...

'କରିବାର ବାଟ ମୁଁ ବତାଇ ଦେବି । ଆଗେ ଉଷା ସହିତ ମୋର ପରିଚୟ କରାଇ ଦିଅ । ତା ପରେ...

'ଭୁଲ ବୁଝିଲୁ ବାସୁ, ମୁଁ ବୃଦ୍ଧେ ପ୍ରେମ...ମୁଁ କାମୁକ ନୁହେଁ ଯେ......

'କିନ୍ତୁ ଭୁବନ ଏତେ ବଡ଼ ଆଦର୍ଶ କଥା ମୋ ଆଗରେ କହନା । ଏ ବୟସର ଖାଦ୍ୟ ବା ନେସେସିଟିକୁ ତୁ ଖାଲି ରୋମାଣ୍ଟିକ ରଙ୍ଗ ଦେଇ ତାହାର ଦୁନିଆକୁ ଠକି ପାରିବୁ ନି । ସିନେ ନାଁ ଦିନେ ତମ ପ୍ରେମର ପରିଣତି ହେବ ଚୁମ୍ବନ...ତାର ପରିଣତି ଶିହରଣ...ତାର ପରିଣତି ପରିପୂରକ ଅବସ୍ଥା, ତାର ପରିଣତି ପୁଣି ଗୋଟାଏ ଜୀବନ...ସୁଜାତା, ସୁ...ଜାତା ।

ଭୁବନ ନୀରବ ।

ବାସୁ କହିଲା, 'ପ୍ରେମିକ ସାଜି କଞ୍ଚା ରକ୍ତ ମାଂସର ବୁଭୁକ୍ଷାକୁ ତୁ ଏଡ଼ି ଦେଇ Platovc Loine ଦେଖା ନାଁ । ତୁ ହୁଏତ ଘଟଣା ଚକ୍ରରେ ସୁଜାତାକୁ ନ ପାଇବାରୁ ସେ ଅନ୍ୟଙ୍କ ବିବାହ କରିପାରେ ଓ ନିଜର ଅତୀତ ସ୍ମୃତିକୁ ଜାଳିପୋଡ଼ି ତା ଉପରେ ନୂଆ ସଂସାର କରିପାରେ—ଅଥଚ ମନ ଭିତରେ ସାଇତି ରଖିପାରେ ଜଳନ୍ତା ଅଙ୍ଗାର, ତୋରି ସ୍ମୃତି ପାଇଁ । ଆଦର୍ଶ ନାଁରେ ତୁ ବି ଉଦ୍‌ଭ୍ରାନ୍ତ ସାଜି ଆଉ ବିବାହ ନ କରିପାରୁ ତୋର ଅତୀତର ସୁଜାତା ପାଇଁ —କିମ୍ବା କଲେ ସୁଦ୍ଧା ସୁଜାତାର ଅସମ୍ପୂର୍ଣ୍ଣ ସମାଧି ଉପରେ ନୂଆ ସଂସାରର ସୁଖଶାନ୍ତି ଆଣି ନ ପାରୁ...ଏମିତି ଭାବରେ ଜଳିପୋଡ଼ି ନିଜେ ମରିବା ପୂର୍ବରୁ ପ୍ରେମ ନ କରିବା ଭଲ । କାରଣ, ପ୍ରେମର

କୂଳ କିନାରା ନାହିଁ । ସେ ଗୋଟିଏ, ନିଶା, ଆକାଶ କୁସୁମ ଗୋଟାଏ । Airy nothing ··

'ତଥାପି ବାପ୍ୟ, ତାକୁ ଟିକିଏ ନ ଦେଖିଲେ ସେମିତି ମୁଁ ଅନ୍ଧ ହୋଇଯାଏ ।

ତାହାଙ୍କ ବ୍ୟାକୁଳତା—'ଶୃଙ୍ଗାର ଶତକ'ରେ ଅଛି—

'ଅଦର୍ଶନେ ଦର୍ଶନ ମାତ୍ରକାମା
ଦୃଷ୍ଟ୍ୱା ପରିଷ୍ୱଙ୍ଗର ସୈକଲୋଲା
ଆଲିଙ୍ଗିତାୟାଂ ପୁନରାୟତାକ୍ଷା
ମାସାସ୍ମହେ ବିଗ୍ରହୟୋ ରଭେଦମ୍ ।

ମାନେ ଦେଖି ନ ଥିଲେ ଦେଖିବାକୁ ଇଚ୍ଛା ହୁଏ । ଦେଖି ସାରିଲେ ଟିକିଏ ଆଲିଙ୍ଗନ କରିବାକୁ ମନ ବଳେ—ଆଲିଙ୍ଗନ ପରେ ପ୍ରଣୟୀ ପ୍ରଣୟିନୀ ଚାହାନ୍ତି ଏକଆତ୍ମା, ଏକମନ, ଏକଦେହ, ଏକପ୍ରାଣ··· ବୁଝିଲୁ ।

'ବାପ୍ପୁ, ତୁ ତ ଏକ ପକ୍କା ଓସ୍ତାଦ୍ ।

'ନ ହେଲେ କି ଭଞ୍ଜ-ଅଭିମନ୍ୟୁ ଦେଶରେ ମୋର ଜନ୍ମ ହୋଇ ଥାନ୍ତା ନାଁ···

ଦୁହେଁ ହସି ଉଠିଲେ । ବାପୁ କାଗଜ ଖଣ୍ଡିଏ ଧରି କହିଲା, 'ଭୁବନ, ଏ ତ ଅପୂର୍ଣ୍ଣ କବିତା···ଆଉଟା ଦେ—

ଲେଖିଲା—

'ହେଲେ ମୁଁ ଅନୁକୂଳ ଉଜାଣି ଉଠେ ଧାଇଁ
ନାହିଁ ଗୋ ପଥ ଯେବେ, କାହିଁ ଗୋ ଆନ ଗତି

ଭୁବନ କହିଲା, ମୁଁ ଏଥରକ ଶଠରେ ଲେଖି ଦେଉଛି, ଚଳ ଦୁଇଧାଡ଼ିଟି ବାପୁଙ୍କଙ୍କର ।

ବାପା ଚିତ୍କାର କରି କହିଲେ—'ନାଁ ନାଁ ଭୁବନ···ମୁଁ ଏତେ ଶୀଘ୍ର ସଂକ୍ରାମିତ ହେବାକୁ ଚାହେଁ ନାଁ···ପ୍ରେମ ଏକ ସଂକ୍ରାମକ ଯୌନ ବ୍ୟାଧି ବିଶେଷତଃ ଏ ଯୁଗରେ, ଏ ବୟସରେ—

'ବେରସିକ ବାପୁ—

'ତାହା ପଛେ ଦେଖିବା···ମୁଁ ଯାଉଛି ପ୍ରଫେସର ପାତ୍ରଙ୍କ ଘରକୁ । ଚାଲିଲି—

ବାପୁ ଚପଲ ଘୋଷାରି ଘୋଷାରି ଚାଲିଗଲେ । ଭୁବନ ଲେଖିଲା ।

ମାନସି,

ଚୁମାଟିଏ ନେବ । ତୁମର ପ୍ରସ୍ତାବରେ ମୁଁ ଉଷା ଦେବୀଙ୍କ ସହିତ ରାଜି ହେଲି । ସମୟ, ସୁବିଧା ଓ ସ୍ଥାନ ବିଷୟ ତାଙ୍କୁ କହିଲେ ସେ ତମକୁ କହିବେ ।

କଣ ଆଉ ଲେଖିବି । ମୋର ହୃଦୟର ଛନ୍ଦ ଏଇ ଦୁଇଧାଡ଼ି ଲେଖା······

\+ + + +

ଭଲ ଲାଗୁନି । ମନ ହେଉଛି, ତମକୁ ଧରି ବନ ସ୍ତତ ବସି ମୁଁ ଗୀତ ଗାଉଥାନ୍ତି—ଚୁମା ଦେଉଥାନ୍ତି·· ଦୁଇଟି ଶରୀରରେ ଥାନ୍ତା ଗୋଟିଏ ମନ, ଗୋଟିଏ ହୃଦୟ, ଆଉ ଗୋଟିଏ ପ୍ରାଣ···ନିଜକୁ କେତେ ଭାଗ୍ୟବାନ ନ ମଣନ୍ତି ମୁଁ ?

ସୁଜାତା—ନିଶ୍ଚୟ, ସବୁ ବ୍ୟବସ୍ଥା କର । ଅଧର ପ୍ରତୀକ୍ଷାରେ ରହିଲା ମୋର ଚିରକାଙ୍ଗାଳ ଓଠ ଦିଅଟି ଧରି । ତା' ପରେ···

ଭୁବନ

ବାହାରେ କାହାର ଜୋତା ଶବ୍ଦ ଶୁଣାଗଲା । ଭୁବନ ଚିଠି ମୁଡ଼ି ଦେଲା ଅତି ତରତରରେ ।

## ❋ ପାଞ୍ଚ ❋

'ତୁ ନିତ କହୁଚୁ କହୁଚୁ କହି ଠକୁଚୁ—ଆଜ କାଲି ନ କହିଲେ ଚଳିବ ନି ।

ଅଞ୍ଜଳିର କଣ୍ଠରେ କୌତୂହଳମିଶ୍ର ଅଭିମାନ ।

ସୁଜାତା କହିଲା—କଣ ବା ନ କହିଛି ତମକୁ ପୁଣି କହିବି ।
'ମୁଁ କହୁଛି କି ତମର ଲଭ୍ କେମିତି ଜୋର ଘଟଣାରୁ ହେଲା, ସେଇ କଥାଟା କହୁଚୁ । ତା ହେଲେ ଆମେ ଦେଖି ଚେଷ୍ଟା କରିବା, କାଳେ ଆମ ଭାଗ୍ୟରେ ଗୋଟା ଅଧେ ସେହିପରି ଘଟଣା ଜୁଟି ଯାଏ...' ତାର ଭାଷାରେ ଆଗ୍ରହଭରା ଚାଞ୍ଚଲ୍ୟ । ନଚେତ୍ ପୁଣି କାହିଁକି ଗୋଟାଏ ଅବଶୋଷ ରହିଯିବ ।

ସୁଜାତା ଉତ୍ତର ଦେଲା—ମୁଁ ତ ପ୍ରେମ କରି ଜଳପୋଡ଼ି ମରୁଛି ।

ଅଞ୍ଜଳି କହିଲା, ଆମେ ତ ତାର ଅଂଶ ମଧ୍ୟ ନେଇଛୁ; ଏ କ୍ଷେତ୍ରରେ ତୋର ଲଭ୍‌ର ଇତିହାସ ନ କହିବାଟା ଅପରାଧ ନୁହେଁ କି ?

ସୁଜାତା ନୀରବ ସମ୍ମତି ଜଣାଇଲା । କହିଲା, ଆଜି ଶନିବାର ତୁ ଚାଲ ଆମ ଘରକୁ, ସେଇଠି...

'ତା ହେଲେ ମୁଁ ହଷ୍ଟେଲକୁ ଖବରଟା ଦେଇଯାଏ । ଏତିକି କହି ସେ ଚାଲିଗଲା ହଷ୍ଟେଲକୁ ।

କିଛି ସମୟ ପରେ ଫେରି ଆସିଲା । ଦୁହେଁ ବସ୍‌ରେ ଆସିଲେ । ସାଙ୍ଗସାଥୀ କେହି ପଚାରିଲା, 'ଅଞ୍ଜଳି ପୁଣି ଏ ଉପନ୍ୟାସ ମଝିରେ ...କଲେଜ ଗାର୍ଲସ୍ ହଷ୍ଟେଲର ମେଘନାଦ ପ୍ରାଚୀର ।

ପଞ୍ଜୁରି ପକ୍ଷୀ ପୁଣି ଏ ମୁକ୍ତ ଆକାଶ ତଳେ ଆଜି କାହିଁକି ?

ସୁଜାତା କହିଲା, ଦେଖତ ଅଞ୍ଜଳି ଏ ମିଶ୍ର କେମିତି ଫାଜଲାମି କରି କଥା ଗୁଡ଼ାକ କହୁଚି ।

'ମୋ କଥା ଏଇଠୁ ରହୁ ।

'ନା ଅଞ୍ଜଳି ଆସିଚି ଆମ ଘରଆଡ଼େ ବୁଲି—

'ବେଶ୍—ଅଞ୍ଜଳି, ବୁଲବୁଲି ନାଁରେ କିଛି ସ୍କୁଲବାଳିଙ୍କ କାମ ନାହିଁକି ?

ଅଞ୍ଜଳି ଉତ୍ତର ଦେଲା, ମୀଶ୍ର—

ମୀଶ୍ର ଚୁପ୍ ରହିଲା ।

ଝଳି ଅଞ୍ଜଳି, ଝଡ ଝଙ୍କାର କୁଲକୁଳି ଗାର୍ଲସ୍କୁଲ ମଟରୁ ଅଟକିଗଲା ସୁଜାତା ଘର ଫାଟକରେ । କଣ୍ଡକ୍ଟର ଦୁଆର ଖୋଲିଦେଲା । ଝୁଟେଁ ଓହ୍ଲାଇ ପଡ଼ିଲେ । ଅଞ୍ଜଳି ପଚାରିଲା—ସୁଜାତା ଆମକୁ ଏବେ ଲୋକ ଗହଳ ଭିତରେ ସ୍ୱୀକୃତି ଛନ୍ତି ।

'ସେଥିପାଇଁ ଆମ ବନ୍ଧୁତା ହୋଇଗଲାଣି···ଆଗେ ଟିକେ ମୁଁ କେମିତି କେମିତି ଭାବୁଥିଲି । ଏବେ ଭାବୁଚି, ଯୁବତୀ ଲୋକ ଗୁଡ଼ାକ କେଡ଼େ ଭଲ ମ···

'ନାଁ, ସେମାନେ ଭଲ ହୁଅନ୍ତି, ଯୁବତୀମାନଙ୍କ ସେମାନଙ୍କ ଜୀବନ—ଅଞ୍ଜଳିର କଥାପଦକର ମର୍ମ ସୁଜାତା ବୁଝି ପାରିଲା ନାହିଁ । ଅଞ୍ଜଳିକୁ ନେଇ ସେ ଭିତରକୁ ଚାଲିଗଲା—ମା' ଦେଖି ତାକୁ ପଚାରିଲେ, 'ଏ କିଏ' ?

ଅଞ୍ଜଳି ନମସ୍କାର କଲା ।

ସୁଜାତା କହିଲା—'ଏଇ ମୋର ସାଙ୍ଗ ଅଞ୍ଜଳି—

'ଓଃ—ଜଗତି ବାବୁଙ୍କ ଝିଅ ନାଁ···

'ହୁଁ···

'ତୁମର ଘର କେମିତି ଏ ସହର ଶେଷରେ [illegible]—

ସୁଜାତା କହିଲା, ମୁଁ ତାକୁ ଆଜ ନେଇ ଆସିଲି ତୋର ଜବରଦସ୍ତ—ନିଜ ଡାକେ, ସେ ନିଜ ମନା କରେ । ଖାଲି ଦୁଷ୍ଟ ପିଲାଟା ସେ—

ଅଞ୍ଜଳି ମୁଁହ ପୋତି ଦେଲା । ସୁଜାତାର ମାଁ କହିଲେ—'ତୁ ଯୋଉଁ ଶାନ୍ତ ଶିଷ୍ଟ ଦେଖୁନୁ ଜିଭ କମିତି [illegible] ତୋ ଉପରେ ବରଷ୍ଣ ହୁଅନ୍ତୁ—

ଦୁଇ ସାଙ୍ଗ ହସାହସି ହେଲେ । ସୁଜାତାର ମା' କହିଲେ, 'ଯା, ଶୀଘ୍ର ଖାଇଆ ସାରିଦିଅ ।

× × ×

ଅଞ୍ଜଳି ଓ ସୁଜାତା ଖଟ ଉପରେ ଶୋଇଛନ୍ତି । ଅଞ୍ଜଳି ଦେଖୁଛି ବୋଭାଲି କୋଠାଟା ନିକଟରେ···ମଟର ଟ୍ରକ ଲେକବାକ ଢେର୍ ଭିଡ଼ । ଟଙ୍କା ପଇସାର ଅଜସ୍ର କାରବାର । କଣ୍ଟ୍ରାକ୍ଟର ଘର । କଟକ ସହର । ନିଜର ଘରର ଅବସ୍ଥା କଥା ସେ ଖାଲି ଭାବିଲା । ବାବା ତାର ଜଣେ ଡେପୁଟୀ ; ଏବେ ରହନ୍ତି ସୁଦୂର ସମ୍ବଲପୁରେ ଭଡ଼ା ଘରେ—କଟକରେ ଥିଲେ-ଗୃହବଖର ଘର—ଏଷ୍ଟେବଣ୍ଡ ( Establishment ) ଆଡ଼ା ଦାଣ୍ଡି-ସ୍ବଚ୍ଛଳ ଜୀବନ, ତହିଁଲରେ ଟଙ୍କା ଥିଲେ ପନ୍ଦର ଭାଗିଙ୍କୁ ଧାର···ସେ ନିଜେ ଘରର ହିସାବପତ୍ର ଦେଖନ୍ତି ।

ଖାଲି ବାବା ତାର ଜଣେ ନାମଜାଦା କଣ୍ଟ୍ରାକ୍ଟର ନ ହୋଇ କାହିଁକି ଏ ସ୍ବଳ୍ପ କଲେ ?

ମନର ଅବଶୋଷ ମନ ଭିତରେ ନିମିଷକେ ମରିଗଲା—

ସୁଜାତାକୁ ଅଞ୍ଜଳି କୁଣ୍ଢାଇଲା । ଦେଖିଲା ତାର ହୃଦୟ ଖାଲି ଛଳ ଛଳ । ପଚାରିଲା, 'କଣ ଭାବୁଛୁ—

ନାଁ ଶୁଣିବ କଣ ? ଭଗବାନ୍ ହୃଦୟକୁ ତ ତୋ ପାଖରେ ତାଲା ଦେଇଛନ୍ତି ।

କିନ୍ତୁ—

କିନ୍ତୁ କଣ ?

କିନ୍ତୁ ତୋର ହୃଦୟର ଦେବତା ତୋ ହୃଦୟରେ ଅଧିଷ୍ଠିତ ରହିଛନ୍ତି ।

ସୁଜାତା କହିଲା, ତୋତେ ଆଜି ପାରି ହେବ ନାହିଁ କଥାରେ କିନ୍ତୁ ତୁ ତ କାମରେ ମୋ ଅପେକ୍ଷା ବେଶ୍ ଆଗେଇଲୁଣି, ଚୁପ୍ କର ମୁଁ କବାଟଟାର ହୁକ୍ ଦେଇ ଆସେ ।

ସୁଜାତାର ଗ୍ରନ୍ଥ ଥରିଲା । ହୁକ୍ ଦେଇ ସେ ତାର ସୁଟ୍‌କେଶ ଖୋଲିଲା-ଆଗ୍ରହରେ ଅଞ୍ଜଳି ଅନାଇଁଥାଏ । ଦେଖିଲା ଅଶୋକ କଢ଼ଗୁଡ଼ଏ ଥୁଆ ହୋଇଛି, ଏ କଣ ?

ଏଇତ ମୋର ଦୁନିଆଁର ଆଦର୍ଶ ।

ମାନେ ?

ହେଇ ଦେଖ, ମୋର କାହାଣୀ ।

ସୁଜାତା ତା' ହାତକୁ ଗ୍ରେଟ ନୋଟ୍ ବୁକଟିଏ ବଢ଼ାଇ ଦେଲା ।

ଅଞ୍ଜଳି ପଚାରିଲା, ମୋର କଏ ଟିକ ଏ ଖାତାଟା ପଢ଼ିବାକୁ ।

ତୁ କହମ୍ ?

କଣ କହିବ ?

ପ୍ରଥମ ପ୍ରେମର ଇତିହାସ···

ଆଗୁ ଶୁଣ···

ସେ ଠିକ ଦୁଇବର୍ଷ ଆଗର କଥା···ଆମେ ସମସ୍ତେ ଭୁବନେଶ୍ୱର ଯାଇଥିଲୁ ଅଶୋକାଷ୍ଟମୀ ଯାତ୍ରା ଦେଖିବା ପାଇଁ ତ ମୁଁ ଓ ବୋଉ ଅଶୋକ କଢ଼ି କିଣି ପାଇଲୁ ।

ମାଇପି ଯାତ୍ରା କହିଲେ ବେଶି ଅତ୍ୟୁକ୍ତି ହେବନି । ସେଇ ଯାତ୍ରୀ ଗହଳରେ ଭୁବନ ବାବୁ ଗୋଟିଏ ଭଲ ଅଶୋକ କଡ଼ ଧରି ଟିକେ ଟିକେ କରି ଆଗରେ ରଖି ବୁଖୁଥିଲେ । ମୁଁ ତ ସେତେବେଳେ ତାଙ୍କୁ ଚିହ୍ନି ନ ଥିଲି । କହି ପକାଇଲି ଏକ ଅପ୍ରସାନ୍ତର କଥା—

ବୋଉ ଶୁଣି କହିଲେ କଣ ?

ହାତ ବଢ଼ାଇ ମୁଁ ତାଙ୍କୁ ଦେଖାଇ ଦେଇ କହିଲି, ଦେଖନ୍ତୁ ବୋଉ ଏ ଟୋକାଟି କାହିଁକି ଅଶୋକ କଡ଼ ଗୁଡ଼ାଏ ଖାଇଯାଉଛି–ବୋଉର ସହଜ ବୁଦ୍ଧିରେ ସେ ସ୍ଥିର କଲେ, ତାକୁ ପଚାରିବ । ମୁଁ ମନା କଲି, କହିଲି, ସିଏ କଏ ନାହିଁ କଏ ହୋଇଥିବେ, ଆମେ କେମିତି ତାଙ୍କୁ ଏ କଥା ପଚାରିବା । ସିଏ କଣ ଭାବିବେ ।

ବୋଉ କହିଲେ ପୁଅଟା ଆସ ଏତେ ବଡ଼ ହେଲାଣି । ଟିକେ ବୁଦ୍ଧି ଶୁଦ୍ଧି ନାହିଁ-ଏ ତୀର୍ଥରେ ଆସି ଏ ଅବାଧ୍ୟ କାମ କରୁଛି ?

ତା'ର ସିଏ କରୁ ଆମର ବା ସେଥିରେ କଣ ଅଛି ।

ବୋଉ ଆହା ଆହା କହିଲେ । ତା' ବାପ ମା'ର ହୁଏତ ସେ ଗୋଟିଏ ବୋଲି ପୁଅ ହୋଇଥିବ ··

ମୁଁ ପ୍ରତିବାଦ କରି କହିଲି, ସିଏ ଯାହା କରିବ, ସେ ତା' ପାଇବ···ଆମର ସେଥିରେ ଯାଏ ଆସେ କଣ ?

ମୋର ପ୍ରତିବାଦ ମଝିରେ ଉଠେ ଖାଲି କୌତୂହଳ । ତାଙ୍କର ସେ ଅଶୋକ କଡ଼ି ଚୁଞ୍ଚିବା ଭଙ୍ଗିଟା ଏବେ ସୁଦ୍ଧା ଆଖିରେ ନାଚୁଛି, ବୋଧହୁଏ ଏ ଜୀବନରେ ଭୁଲିବାର ନୁହେଁ···

'ହୁଁ—ତା' ପରେ କଣ ହେଲା ?

ତା' ପରେ ବୋଉ ଆମ ଟୁନା ହାତରେ ତାଙ୍କୁ ଡକାଇ ପଠାଇଲେ । ପ୍ରଥମେ ପ୍ରଥମେ ସେ ମନା କରୁଥିଲେ । ଟୁନା ଟିକଏ

ଛାଟର କଲରୁ ଲୁହ ଲହ ହୋଇ ଆସି ଆମ ଆଗରେ ଠିଆ ହେଲେ। [illegible] ସାଙ୍ଗରେ ଯାଇଥିଲେ। ସେତେବେଳେ ସେ ନ ଥାନ୍ତି; କୁନକୁ ସାଙ୍ଗରେ ଧରି ମନ୍ଦିର ବୁଲିବାକୁ ଯାଇଥାନ୍ତି।

ବୋଉର ମୁହଁକୁ ସେ ଚାହିଁ ଦେଲେ ଓ ମୋତେ ଟିକିଏ ଅନେଇ ଦେଇ ଆଖି ତଳକୁ କଲେ।

ବୋଉ ପଚାରିଲା, ପୁଅ ତମ ଘର,

'ବାଲେଶ୍ୱର

'କାହିଁକି ଆସିଛ ?

'ଯାତ୍ରାକୁ।

'ଘରୁ କିଏ ଆଉ କେହି ଆସିଛନ୍ତି ?

'ନାଁ...

'ତେବେ ଏକା...

'ହଁ...

'ଆଚ୍ଛା, ଅଶୋକ କଡ଼ି ଖାଉଥିଲା କାହିଁକି ?

'ମୁଁ ଦେଖିଲି ସମସ୍ତେ କ'ଣ ଟିକେ ଟିକେ ପାଉଛନ୍ତି !

ବୋଉ ପଚାରିଲା, ସମସ୍ତେ ମାନେ ମାଉସୀ...ସେମାନଙ୍କର ବାଧ୍ୟ—ତୁମେ ଏତେ ବଡ଼ ପୁଅ ହେଲଣି ଆସି, ତମର ଏତିକି ଜ୍ଞାନ ହୋଇନି !

ବୋଉର ପ୍ରଶ୍ନ ଶୁଣି ଆଉ ତଳେ ପାଣି ତାଙ୍କୁ ଘେରି ଗଲେଣି। ନୀରବ, କରୁଣ ଓ ଆହତ ଦୃଷ୍ଟିରେ ସେ ବୋଉର ମୁହଁକୁ ଚାହିଁଥିଲେ। ମୁଁ ତାଙ୍କୁ ଚାହିଁଲି। ସତେ ଅଞ୍ଜନା, ସେ ଚାହାଁଣିରେ ମୁଁ ମୋର ଅଭିମାନ ଓ ବ୍ୟକ୍ତିତ୍ୱ ଭୁଲିଗଲି। ସେ ନିଜର ଦୁର୍ବଳତାକୁ ଲୁଚି ରଖି କହିଲେ, କ'ଣ ଖାଇଲେ କ୍ଷତି ?

ବୋଉ କହିଲା, ଅବଧ୍ୟ...

ତଥି ଅବଧି ଆମର କ'ଣ ? ଟିକେ ବୁଝି ନେଲି, କଥା ଲାଗିଲା।

ମୁଁ ଆଗଭୁସ ପଞ୍ଚ କହିଲି, ବୋଉ ଥାଉ, ଭଦ୍ରଲୋକ ବେଶ ଅପମାନ ପାଇଲେଣି—

ମୋର ଉଦ୍ଧତ ଅନୁରାଗ ଦେଖି ସେ କହିଲେ, 'ମାଉସି' ଏ କିଏ ?

ମୋ ଝିଅ ··

ବୋଧହୁଏ କଲେଜରେ ପଢ଼େ, ନ ହେଲେ ସ୍କୁ···

ମୁଁ କହିଲି, ନା···ଗାର୍ଲସ୍କୁଲରେ ପଢ଼େ। କାହିଁକି, ଆପଣ କ'ଣ କରନ୍ତି ?

ମୁଁ ପଢ଼େ, କଟକରେ···

କ'ଣ ପଢ଼ନ୍ତି ?

I. Sc,

ଆଚ୍ଛା ମାଉସି···

ଏତିକି କହି ସେ ଅଟକି ଗଲେ। ବୋଉ ପଚାରିଲା କ'ଣ ? ସେ କହିଲେ, ତମ ଝିଅକୁ ମୁଁ ସେଇ ଅଶୋକ କଡ଼ି କଥା ପଚାରୁଛି। ସେ କହନ୍ତୁ ତ କାହିଁକି ଏ ଦିନ ଅଶୋକ କଡ଼ି ଖିଆଯାଏ···

ମୋର ହଲକ ସୁଖିଲା। କାହିଁକି ଅଶୋକକଡ଼ି ଖାଆନ୍ତି ? ଭାବିଲି, ଏଥର ନିଶ୍ଚୟ ଗୋଟାଏ ନାଁ ଗୋଟାଏ କିଛି କାରଣ ଥିବ ? ବୋଉ ଖାଲି କହୁଥାଏ ଦଧି···ଦଧି···

ସେ ମୁଣ୍ଡ ହଲାଇ ମନା କଲେ। କହିଲେ, ଏଇ କଥା ତ ଜାଣି ନାଁ, ଆଉ ଖାଲି ଭଦ୍ରଲୋକଙ୍କୁ ଅପଦସ୍ଥ କର ଜାଣ ?

କି ଗମ୍ଭୀର ତାଙ୍କର ମୁହଁ—ମୁଁ ଆଉ ସହିଁ ପାରିଲିନି। ବୋଉ ମଧ୍ୟ କିଛି କହିପାରିଲାନି। ସେ ଟୁନାକୁ ପାଖକୁ ନେଲେ; ପଚାରିଲେ ତମ ବାପା ନାଁ କ'ଣ ?

ଝୁନା ସବୁ କହି ଦେଲା । ମୋ ନାଁଟା କହି ଦେଲାବେଳେ ମତେ ଭାରି ଲାଜ ମାଡ଼ିଲା । ଶୁଣି ସାର୍‌ ସେ ତାଙ୍କର ଅଶୋକସ୍ତବକଟିକୁ ତା' ହାତରେ ଦେଇ କହିଲେ, 'ନଅ,

ବୋଉ କହିଲା ଆମର କ'ଣ ହେବ ?

ସେ କହିଲେ, ଆପଣଙ୍କ ବଧୂ···ଆମର ଅବଧୂ···

ଝୁନା ଅଶୋକସ୍ତବକ ପାଇ ମୋ ହାତକୁ ଦେବାକୁ ବସିଲା । ବୋଧହୁଏ, ତାଙ୍କର ତାହାହିଁ ଲକ୍ଷ୍ୟ ଥିଲା । ପ୍ରଥମେ ମୁଁ ନେଲି ନାହିଁ ।

'ଆଚ୍ଛା, ମାଉସି' ମୁଁ ଯାଏ—ବୋଲି କହି ସେ ଅଗଣିତ ଯାତ୍ରୀ ଗହଳରେ ମିଶି ଯିବାକୁ ବସଲେ ।

[ମନୁଭାଇ] [illegible] ଆସି ପହଞ୍ଚିଗଲେ । ବୋଉ ପଚାରିଲା, ତମେ ତ ସବୁ ବୋଝବାଜ କଲ—ଚାଲ ଯିବା ।

ମୁଁ ଏତିକିବେଳେ ଅଶୋକସ୍ତବକଟିକୁ ହାତରେ ଧରି ମନୋଯୋଗ ସହକାରେ ତା'ର କେଶରର ସୌନ୍ଦର୍ଯ୍ୟକୁ ନିରୀକ୍ଷଣ କରିବାକୁ ଲାଗିଲି । କେଡ଼େ ସୁନ୍ଦର ଗୁଚ୍ଛଟିଏ···

ମୁହଁ ଉଠାଇ ଦେଖେ, ଅଳ୍ପ ଦୂରରେ ଛିଡ଼ା ହୋଇ ସେ ମୋତେ ଲକ୍ଷ୍ୟ କରି ମୃଦୁ ମୃଦୁ ହସୁଛନ୍ତି । ମୋତେ ଦେଖି କ୍ୟାମେରା ଉଠାଇଲେ—ଚମକି ପଡ଼ିଲି ଓ ଅଶୋକସ୍ତବକ ହାତରେ ଥିଲାବେଳେ ଭଦ୍ରଲୋକ ସେ ମୋର ଫଟୋ ନେଇଗଲେ—ଭାରି ଲାଜ ଲାଗିଲା—ବୋଉ କି [ମନୁଭାଇ] [illegible] କେହି ଜାଣି ପାରିଲେ ନାହିଁ ।

ମନ ଭିତରେ ଗୋଟାଏ କୌତୂହଳର ବୁଦବୁଦ ଦାଗ ପଡ଼ିଗଲା । ସେ କିଏ ? ମୁଁ କିଏ ? ସେ କାହିଁକି ମୋର ଫଟୋ ନେଲେ ?

ଯାତ୍ରୀ ଗହଳରେ ଯେତିକି ଦୂର ହଜିଗଲେ ମନର କୌତୂହଳ ସେତିକି ବଢ଼ିବାକୁ ଲାଗିଲା । ସେତେବେଳେ ମୋର

ମନ ହେଉଥାଏ, [illegible]ଙ୍କୁ ପଠାଇ ତା'ଙ୍କୁ ଡାକି ଆଣି ତାଙ୍କର ପୂର୍ବ ପରିଚୟ ଜାଣନ୍ତି···ତା' ହେଲା ନାହିଁ ।

କେଦାରଗୌରୀ ନିକଟରେ ନିଜର କୌତୂହଳକୁ ପ୍ରଶମିତ କରିବା ପାଇଁ ପୂର୍ବର ସ୍ମୃତି ମନେ ପକାଇ ନେଲି । ମନେ ମନେ ସେଇଦିନକୁ ଭାବିବାକୁ ଲାଗିଲି, ସେ କିଏ ମ ଆଜି ଚାରି ଦିନରେ ଏ ଶୀର୍ଷରେ ଦେଖା ଦେଲେ ?

ରହସ୍ୟର ଅନ୍ତରାଳରେ ଆଶା ଓ ଅନୁରାଗ ନିତି ନିତି ରଞ୍ଜିତ ହୋଇ ଉଠୁଥିଲେ । ମୁଁ ସ୍ମୃତି ଚନ୍ଦ୍ରଲୋକର ଅଶୋକସ୍ତବକକୁ ସାଇତି ରଖିଲି ।

ତା'ର କିଛି ଦିନ ପରେ —

ହଠାତ୍ ଘର ଠିକଣାରେ ଚିଠିଟିଏ ପାଇଲି — ଚିଠିରେ ଲେଖାଥିଲା —

ସୁଜାତା ଦେବୀ,

ଆପଣଙ୍କର ଫଟୋଟି ଆସନ୍ତା ଶନିବାର ୧୦ଟା ବେଳେ ଫଟୋ ଏମ୍ପୋରିୟମରୁ ନେଇ ଯାଇପାରନ୍ତି । ଫଟୋ ଫ୍ରେମ୍ ଓ ବନ୍ଧାଇ ସହ ମୂଲ୍ୟ ଟ ୫୯ ।

ଆପଣଙ୍କର —
ଫଟୋ ଏମ୍ପୋରିୟମ

ଦସ୍ତଖତ୍‌ଟା ପଢ଼ିହେଲା ନାହିଁ । ମୋର ଜୀବନର ଏ ନିଗୂଢ଼ ରହସ୍ୟ ଭାବି ଭାବି କିଛି ଠିକ୍ କରି ପାରିଲି ନାହିଁ । ଟଙ୍କାଟା ସଜଲ୍ କରି ନେଲି । ସାହାସ ହୁଏ ନାଁ, ଫଟୋ ଏମ୍ପୋରିୟମକୁ ଯିବାକୁ । ମନରେ ସନ୍ଦେହ ଆସେ । ଭଦ୍ରଲୋକ ଯେବେ ପ୍ରକୃତରେ ଫଟୋଗ୍ରାଫର ହୋଇଥାନ୍ତି, ତା' ହେଲେ କେତେ ବଡ଼ ଅଭଦ୍ର କଥା ଏ. ଜାଣି ଜାଣିନ ହେମ ନ ହେବା !

କିନ୍ତୁ ଠିକ୍ କରି ପାରିଲି ନାହିଁ । ଭାବି ବସିଲି ବହୁତ, ଉପାୟ କିଛି ବାହାରିଲା ନାହିଁ । ସ୍ଥିର କଲି, ଭଲ ହେଉ ମନ୍ଦ ହେଉ, ଫଟୋ ଏମ୍ପୋରିୟମକୁ ଯିବାକୁ ପଡ଼ିବ ସେଇ ନିର୍ଦ୍ଦିଷ୍ଟ ଦିନ । ଫଟୋଗ୍ରାଫର ଥିଲେ ତ ଚିହ୍ନିବେ । ନ ହେଲେ···

ରହସ୍ୟର ପ୍ରବେଶ ଆବିଷ୍କାର କରିବା ପାଇଁ ମୁଁ ବଦ୍ଧ ପରି-କର ହୋଇ ଶନିବାର ଦିନ ସ୍କୁଲରୁ ଫେରି ଫଟୋ ଏମ୍ପୋରିୟମକୁ ଗଲି । ଦୁଆରେ ମୁହଁରେ ସେ ବସିଥିଲେ । ମୋତେ ଦେଖିଲା ମାତ୍ରେ ମୋର ଫଟୋଟି ଗୋଟିଏ ଖୋଳ ସହ ମୋ ହାତକୁ ବଢ଼ାଇ ଦେଲେ । ମୋ ଛାତି ଖାଲି ସେତେବେଳେ ପଡ଼ୁଥାଏ ଉଠୁଥାଏ । କେମିତି ତାଙ୍କୁ ଟଙ୍କା ଦେଇ ଚାଲି ଆସିବି ବୋଲି ବାଟ ଦେଖାଯାଉ ନ ଥାଏ । ଆଶଙ୍କା, କଏ ଜାଣିଲେ କଣ ଭାବିବ ?

ଟଙ୍କା ବଢ଼ାଇଦେଲି, ସେ ମନା କଲେ । କହିଲେ, 'ଆପଣଙ୍କ ବାପା ଦେଇ ଯାଇଛନ୍ତି···ଆପଣ ଯାନ୍ତୁ ।'

ଫଟୋକୁ ଧରି ମୁଁ ତରତରରେ ଚାଲି ଆସିଲି । ମୁହଁ ଲାଲ ପଡ଼ିଗଲା । ଦେହଟା ଥରି ଉଠିଲା । ମନେ ହେଲା, ମୁଁ ଯେମିତି ଏକ ଆସନ୍ନ ବିପଦରୁ ରକ୍ଷା ପାଇଲି । ବହି ଭିତରେ ଫଟଟି ରଖି ଦେଇ ମୁଁ ମଟରରେ ବସିଲି । ଘରେ ଆସି ଦେଖେ ତ, ମୋର ସେଇ ଭୁବନେଶ୍ୱରର ଫଟୋ—ଫଟୋ ପଛପଟେ ଲେଖାଥିଲା ଭୁବନବାବୁଙ୍କ ପୂରା ଠିକଣା ।

ସେଇ ଦିନଠାରୁ ମୋର ଆଶଙ୍କା କ୍ରମେ ବଢ଼ିଲା । ଦିନସାରା ତାଙ୍କର ଚୋରଚକରକ ଚେହେରାଟି ଆଖି ଆଗରେ ନାଚିଲା— ମୁଁ ଯେଉଁଆଡେ ଚାହେଁ, ସେଆଡ଼େ ତାଙ୍କୁ ଦେଖିବାକୁ ପାଏ ।

ଜୀବନରେ ବସନ୍ତର ଜ୍ୱାଳା ସହି ନ ପାରି ମୁଁ ତାଙ୍କୁ ଆଗ ଚିଠି ଦେଲି । କିଛି ଦିନ ପରେ ଖଣ୍ଡେ ଓଡ଼ିଆ ବ୍ୟାକରଣ ବହି

ରେଜିଷ୍ଟାର୍ଡ଼ ବୁକ୍ ପୋଷ୍ଟରେ ପାଇଲି । ତା' ଭିତରେ ଚିଠି ଥିଲା ଏବଂ ସେ ମୋତେ ନିର୍ଦ୍ଦେଶ ଦେଇଥିଲେ, ଯେ ତାଙ୍କର ଚିଠିଗୁଡ଼ିକ ସେ ନିଜେ ଆସି ଗାର୍ଲସ୍‌ସ୍କୁଲ ଦରୱାନକୁ ଦେଇଯିବେ ଓ ସେହି ଦରୱାନଠାରୁ ମୁଁ ପାଇବି ।

ଏଇ ହେଲା ଅଞ୍ଜଳି ମୋର ଜୀବନର ଇତିହାସ । ଏଣିକି ଏପରି ହେଲାଣି ଯେ ତାଙ୍କୁ ସବୁ ମୁହୂର୍ତ୍ତରେ ଦେଖିବାକୁ ଓ ନିଜର କରି ପାଖରେ ରଖିବାକୁ ଇଚ୍ଛା ହେଉଛି । କିନ୍ତୁ ପାଉଛି କେଉଁଠୁ ?

ବୋଉ ବୋଧହୁଏ ଏ ସବୁ ଘଟଣାର ଆଭାସ ପାଇଲାଣି । ଅନେକ ସମୟରେ ସେ ମୋ ଉପରେ ଅଯଥା ବିରକ୍ତ ହୁଏ । ପରେ ମତେ ଏଣୁ ତେଣୁ କହି ଭୁଲେଇ ଦିଏ ।

ଅଞ୍ଜଳି ପଚାରିଲା, 'ଆଚ୍ଛା, ଶୀଘ୍ର ବିବାହ ସାରିଦେଲେ ତ କାମ ସରିଯାନ୍ତା—

ସୁଜାତା କହିଲା, ତେତେ ବଡ଼ ଭାଗ୍ୟ ମୋର କାହିଁ ?

'ଆଚ୍ଛା, ବନ୍ଦୋବସ୍ତ କରିବା—

ହଁ, ଥରେ ଦେଖା କରେଇ ଦେବାକୁ ତ ତୋର ପ୍ଲାନ୍ ଠିକ୍ ହେଉନି···

ଆଚ୍ଛା, ଦେଖିବୁ ଏ ଆସନ୍ତା ରବିବାର ।

ସୁଜାତା ଭୁବନର ଫଟୋଟି ବାହାର କଲା । କ୍ଷଣକାଳ ଦେଖି ଅଞ୍ଜଳିକୁ ଦେଲା; କହିଲା, ଏଇ ମୋର ସର୍ବସ୍ୱ···

ଆଃ ଏକ୍‌ସଲେଣ୍ଟ ରେଦେହେବ ତ ?

ଦୁହେଁ ସ୍ମିତ ନେତ୍ରରେ ଫଟୋଟିକୁ ଅନାଇ ରହିଲେ ।

କ୍ଷତ ବିକ୍ଷତ ଅବ୍‌ଶୋଷ ନେଇ ଭୁବନ ଅପରାଧୀ ପରି ସୁଜାତାର ଚିଠି ପଢ଼ିଲା—

ଜୀବନର ଦେବତା—

ଏତେ ନିଷ୍ଠୁର ତୁମେ—ଏତେ ନିର୍ମମ ତୁମେ—ତୁମର ହୃଦୟ କଣ ପାଷାଣ ? ମୋର ଦେବତା ହୋଇ ତୁମେ ପୁଣି ଏତେଦୂର ଛଳନାମୟ, ଏତେ ଦଗାଦାର । ଟିକିଏ ଦେଖା ପାଇଁ ପ୍ରାଣ ମୋର କେତେ ବ୍ୟସ୍ତ ବିକଳ ହୋଇ ଉଠୁଛି । ଆଜି ତୁମେ ଟିକିଏ ମୋତେ ଦେଖା ଦେଉନାହଁ ? ଏ ସବୁ ମୋର ହୀନତମ କପାଳର ଲେଖା । କାହାକୁ କହିବି ?

ତୁମ ମନରେ ଯେବେ ଏତେକଥା ଥିଲା, ମୂଳରୁ ବିଷ ଟିକିଏ ନ ଦେଲ କାହିଁକି ? ଏତେଦୂର ନିଷ୍ଠୁର, କିନ୍ତୁ ମୋ ନିକଟରେ ଥିଲେ ମୁଁ ଆଜି ତମକୁ ପାଟି ଫିଟାଇ ନ ଥାନ୍ତି କିମ୍ବା କଥା କହି ନ ଥାନ୍ତି । ଜଳାପୋଡ଼ା ପ୍ରାଣକୁ ଆହୁରି ଜାଳିପୋଡ଼ି ମାର୍ତ୍ତଣ୍ଡ ପରି ଦେବତା, ସୁଜାତା ଶେଷ ଆଶାର କ୍ଷୀଣତମ ଶିଖା ଧରି ପୂଜାରି ପ୍ରତୀକ୍ଷା କରୁଥିବ ।

ସୁଜାତା—

ଭୁବନର ଆଖି ଲୁହ ଛଳ ଛଳ ହୋଇ ଆସିଲା । ହୃଦୟର ନିଭୃତ ତନ୍ତ୍ରୀ କରୁଣ ବିତାନରେ ଥରି ଉଠିଲା । ପ୍ରାଣର ଆବେଗରେ ସେ ଲେଖିଲା ।

ଜୀବନର ତୁମେ,

ବିରହୀ ହୃଦୟର ଅଶ୍ରୁଳ ଆଶ୍ଳେଷ ଗ୍ରହଣ କରିବା ସେଦିନ ଯଥା ସମୟରେ ଯାଇ ପାରିଲ ନାହିଁ ବୋଲି ତୁମେ ମୋତେ ଅପରାଧୀ କରି ଲେଖିଚ । ବାସ୍ତବିକ ମୁଁ ଅପରାଧୀ, କିନ୍ତୁ ଅଦୃଷ୍ଟର ଶାଣିତ ଇଙ୍ଗିତରେ ମୁଁ ଅପରାଧୀ ; ଜାଣେନା ସୁଜାତା, ଏ ଜୀବନରେ ତୁମେ ମୋତେ କେତେ ବଡ଼ ସମ୍ମାନ ନ ଦେଇଚ । ପ୍ରଣୟ ତମର ମୋତେ କରିଛି ଅମର ସୁନ୍ଦର ଏବଂ ମହତ୍ । ଏପରି ପ୍ରତିଦାନର ଅମର୍ଯ୍ୟଦା କ'ଣ ଘଟିପାରେ ସୁଜାତା !

ବାସ୍ତବିକ ତୁମର କୋମଳ ହୃଦୟରେ ମୁଁ ଯେଉଁ ଆଘାତ ଦେଇଛି, ସେଥିପାଇଁ ତୁମ ପାଖରେ କ୍ଷମା ମାଗୁଛି । ଅଞ୍ଜଳି ଓ ଉଷାଙ୍କ ମନବେଦନା ପାଇଁ ନିଜେ ତାଙ୍କୁ କ୍ଷମା ମାଗି ପାରିବି ନାହିଁ । ତୁମେ ନିଜେ ମୋତେ କ୍ଷମା ଦେଇ ମୋ ପାଇଁ ବ୍ୟଥିତ ହୃଦୟରେ ସେମାନଙ୍କଠାରୁ କ୍ଷମା ଆଣିବ । ଏତିକ ଦାୟିତ୍ୱ ତୁମେ ନ ନେଲେ ମୋର ଅବା ଆଉ କିଏ ପ୍ରାଣର ସାଥି ଅଛି ଯେ ଏ ସବୁ ଦାୟିତ୍ୱ ତୁଲେଇ ପାରିବ ।

ସାବଧାନ ଥିବ ସୁଜାତା, ମୋତେ ଭୁଲି ଯିବ ନାହିଁ । ସେ ଦିନ ଆମ ଘରୁ ବାପା ଓ ମଉସା ଆସି ପହଞ୍ଚିଗଲେ । ସେମାନଙ୍କୁ ଛାଡ଼ି ତୁମକୁ ସାକ୍ଷାତ କରିବା ଆଉ ସମ୍ଭବପର ହୋଇ ପାରିଲା ନାହିଁ । ଆଚ୍ଛା, ତୁମେ ଏଥିରେ କ୍ଷୁଣ୍ଣ ହୋଇଛ ? ହେବାର କଥା । ପ୍ରତୀକ୍ଷା କରି କରି ତୁମେ ଯେତେବେଳେ ବ୍ୟର୍ଥ ହୃଦୟରେ ଫେରି ଯାଇଥିବ ତୁମ ନିବାସକୁ, ମୋତେ ଅଭିଶାପ ଦେଇ କହିଥିବ 'ଦଗାବାଜ'— କିନ୍ତୁ ଭାବି ଦେଖ, ମୋର ସେଦିନର କର୍ତ୍ତବ୍ୟ କ'ଣ ତୁମର କର୍ତ୍ତବ୍ୟ ନୁହେଁ ?

ବେଶୀ କିଛି ଲେଖି ପାରୁନି । ପିପାସିତ ଚକ୍ଷୁ ମୋର ଶତ ସହସ୍ର ଗୁଣରେ ପୁଣି ପିପାସିତ ହୋଇ ଉଠୁଛି । ଭୁଲି ଯିବନି ସୁଜାତା ! ଭୁଲି ଯିବନି !

କେବେ ଦେଖା ହେବ ଆଉ ?

ଭୁବନ

---

# ଦ୍ୱିତୀୟ ଭାଗ

## * ସାତ *

ବୋଉ ଦେଖିଲୁଣି–ହେଇ ଦେଖ ନ ..

ସୁଜାତାର କଥା ଶୁଣି ବୋଉ ତା'ର ଚାହିଁଲେ । କହିଲେ, କଣ ନ···ହେଇ···ସେ ଯେଉଁ ଭଦ୍ରଲୋକ ଅଶୋକକଡ଼ି ଦେଇ ନ ଥିଲେ ଭୁବନେଶ୍ୱରରେ···ସେଇ ତ ଏଠି ବୁଲୁଛନ୍ତି···

ହଁ ତ···ଏତିକି କହି ସୁଜାତାର ମା' ରମାକୁ ଡାକି କହିଲେ ରମା ଏ ଯେଉଁ ଭଦ୍ରଲୋକ ବୁଲୁନାହାନ୍ତି, ତାଙ୍କୁ ଡାକିଲୁ—

ରମା ଚାଲିଗଲା । ସୁଜାତାର ହୃଦୟ ଆନନ୍ଦରେ ନାଚି ଉଠିଲା । ସେ କେବଳ ଭୁବନ ଆଡକୁ ଦୃଷ୍ଟି ପକାଇ ଆଖି ତଳକୁ କଲା ।

ଭୁବନ, ତା'ର ମା', ଭଉଣୀ ଝଦୁ, ସାନଭାଇ ଝନମ ଚାରିହେଁ ସମୁଦ୍ର କୂଳରେ ବୁଲୁଥିଲେ । ସଞ୍ଜବେଳେ ଶୀତଳ ପବନ···ଉତ୍ତାଳ ଲହରୀ–ଦେହ ମନର ରନ୍ଧ୍ରେ ରନ୍ଧ୍ରେ ଅଜଣା ପୁଲକ ଖେଳାଇ ଦେଉଥିଲା । ଭୁବନର ମନ ଭିତରେ ସନ୍ଦେହର ଢେଉ ଉଠିଥିଲା, ସୁଜାତାର କୌଣସି ସଂକେତ ନ ପାଇ । ତିନିଦିନ ହେଲା ପୁରୀ ଆସିଲେଣି···ଆଉ ସୁଜାତା କେବେ ?

ସୁଜାତାକୁ ସୃଷ୍ଟି ଦେଲା ମାତ୍ରେ ଭୁବନର ଦେହ ଭିତରେ ନୂତନ ଉଲ୍ଲାସ ଖେଳିଗଲା । ରମା ଉଚ୍ଚସ୍ୱରେ ବାବୁ ଆପଣଙ୍କୁ କାର୍ତ୍ତିକ ମା' ଡାକୁଛନ୍ତି—

କୋଉ ମା' !

କ'ଣ ବାବୁ ଆପଣ ଆମକୁ ଚିହ୍ନି ପାରୁ ନାହାନ୍ତି ?

ଜାଣି ନ ଜାଣିଲା ପରି ଭୁବନ କହିଲା, ହଁ, ହଁ... କେଉଁଠି ତୋତେ ଦେଖିଲା ପରି ମନେ ହେଉଛି ତ !

ହଁ ବାବୁ, ଆପଣ ସିନା ବଡ଼ ଲୋକ, ଆପଣଙ୍କର ଆଉ କାର୍ତ୍ତିକ ଅଶୋକାଷ୍ଟମୀ କଥା ମନେ ପଡ଼ୁଥିବ ?

'ଓଃ ବୁଝିଲି, ବୁଝିଲି' ଭୁବନ ପ୍ୟାଣ୍ଟ ପକେଟରେ ହାତ ଭରିଲା ।

'ତେବେ କ'ଣ ତମର ସନ୍ତାନେ ଆସିଛନ୍ତି...

'ହଁ ବାବୁ ଆପଣ ଚାଲନ୍ତୁ—

ଏଣେ ସୁଜାତା ପକ୍ଷରେ ଅସହ୍ୟ ହୋଇ ଉଠିଲା । ସେ ମନେ ମନେ ଭାବିଲା, ବୋଧହୁଏ ରମା କ'ଣ ଏପଟ ସେପଟ କରି କହିଲା– ସେ ବୋଧହୁଏ ଅପବାଦକୁ ଡରି ଆସୁନାହାନ୍ତି । କୋଉ ତ ତାଙ୍କୁ ଡକାଇ ପଠାଇଛି ! କଭଳି ଭଦ୍ରଲୋକ ସେ ? ମୋ ଲାଗି ଟିକେ ହେଲେ ଛାତିରେ ଦୟା ନାହିଁ ।

ବିନ୍ଦୁ ଭୁବନକୁ ପଚାରିଲା, ଭାଇ, କିଏ ସେ ଡାକୁଛି ?

ଭୁବନ କହିଲା–ଆଚ୍ଛା ଚାଲ ଦେଖିବା—

ଭୁବନର ମା' ଓ ଅନ୍ୟାନ୍ୟମାନେ ପଛରେ ରହିଲେ । ବିନ୍ଦୁ ଓ ଭୁବନ ରମା ପଛେ ପଛେ ଚାଲିଲେ । ସୁଜାତା ବିନ୍ଦୁକୁ ଦେଖିବା ମାତ୍ରେ ଚମକି ଉଠିଲା । କ'ଣ...ଏ କିଏ...

ସୁଜାତାକୁ ଦେଖି ଭୁବନ ଟିକେ ଗମ୍ଭୀର ହୋଇ ପଡ଼ିଲା । କିନ୍ତୁ ଚଞ୍ଚଳ ଆଖିର ମୃଦୁ ଭ୍ରୂକୁଞ୍ଚନରେ ସ୍ନିଗ୍ଧ ଆଖିର ଭାଷା ଶବ୍ଦମୟ ହୋଇଗଲା । ତା'ର ମା' ଭୁବନ ଓ ବନ୍ଦୁକୁ ଦେଖିଲା ମାତ୍ରେ ପଚାରିଲେ, ପୁଅ କ'ଣ ଆମକୁ ସବୁ ଭୁଲିଗଲୁ ?

ସୁମା ଆଗ ବଢ଼ି କହିଲା ମା' ସେ କ'ଣ ଆଉ ଭୁଲିଥିଲେ, ମୁଁ ସବୁ ଚିହ୍ନା ଦେବାକୁ ଆସିଛନ୍ତି ନାଁ-କଉଁଲେଇ ପୁଅ···ଆମକୁ ଆଉ ଜାଣିବ···

ନମସ୍କାର କଲା ଭୁବନ । ସୁଜାତାର ଅନ୍ତରର ଆତ୍ମ ନିବେଦନ କେବଳ ମୌନ ଦୃଷ୍ଟିରେ ସୁସ୍ପଷ୍ଟ ହୋଇ ଉଠିଲା । ଚପଲ ଧାରରେ ବାଲି ଉପରେ ସେ ନତଦୃଷ୍ଟିରେ ଗାର କାଟିବାକୁ ଲାଗିଲା । ବନ୍ଦୁ ଶାନ୍ତ ଭାବରେ ଏ ଦୃଶ୍ୟ ଦେଖିବାକୁ ଲାଗିଲା ।

ସୁଜାତାର ମା' ପଚାରିଲେ ବା'ବୁ, କ'ଣ ଏକା ?

ନାଁ, ଆମର ବୋଉ ହେଉଛନ୍ତି ଆସିଛନ୍ତି—

ଏ କିଏ ?

'ବନ୍ଦୁ, ସାନ ଭଉଣୀ ମୋର ।

'ଜାହାନ୍ତି ଅନ୍ୟମାନେ

'ଏଇଠି ବୁଲାଚଲା କରୁଛନ୍ତି ।

ସୁଜାତା ବନ୍ଦୁର ହାତ ଧରି ନେଲା । ତାକୁ ପଚାରିଲା ବନ୍ଦୁ ତମେ କ'ଣ କର ?

'ତମେ କ'ଣ କର ?

ମୁଁ ପଢ଼େ ।

ମୁଁ ପଢ଼େ ।

'ହେଁ କେଉଁଠି ପଢ଼ ।

'ଗାଁ ସ୍କୁଲରେ ୭ମ ଶ୍ରେଣୀରେ ।

ତମ ଭାଇ କଣ କରୁଛନ୍ତି ।

ସେ ଏ ବର୍ଷ I. Sc. ପରୀକ୍ଷା ଦେଉଛନ୍ତି ।

ଆଚ୍ଛା, ଆସ ଏଣେ ଯିବା ।

ନାଁ, ମୁଁ ଭାଇଙ୍କି ଛାଡ଼ି କୁଆଡ଼େ ଯିବି ନାହିଁ ।

ଓଃ—ସେ'ଇ ଭାଇତ !

ବନ୍ଦୁ ଭାରି ମନ କଷ୍ଟ କଲା । ସୁଜାତା ଟିକେ ଅଳ୍ପ ଦୂରକୁ ନେଇ ପଚାରିଲା—ବନ୍ଦୁ···ତମ ଭାଇଙ୍କ ନାଁ···

ଭୁବନ···

ବନ୍ଦୁ ପଚାରିଲା, କାହିଁକି ?

କାହିଁ ତମେ କହିଲ ନାଁ, ତମ ଭାଇଙ୍କି ଛାଡ଼ି କୁଆଡ଼େ ଯିବ ନାହିଁ ।

ହଁ, ମୁଁ କାଲେ କୋଉଠି ହଜି ଯିବି ।

କିନ୍ତୁ ଯେତେବେଳେ ତୁମେ ନୂଆ ବରଟିଏ ପାଇ ତାଙ୍କ ସାଙ୍ଗରେ ତମ ଘରୁ ଚାଲି ଯିବ, ସେତେବେଳେ ତ ତମର ଭାଇଙ୍କି ଛାଡ଼ିଦେବ ?

ବନ୍ଦୁ ଛୋଟ ପିଲା । ଲାଜ ଲାଜ ହୋଇ କହିଲା—ହଁ ଏ କଥାମ—ତମେ ପରା ବେଶୀ ଶିକ୍ଷିତ—

ଶିକ୍ଷିତ ଅଶିକ୍ଷିତ ସମସ୍ତେ ଦିନେ ବିବାହ କରିବେ ହିଁ କରିବେ । ଆଗରୁ ସେ କଥାଟା କହିଦେଲେ କ୍ଷତି କଣ ?

ବନ୍ଦୁ ଏ କଥାର ରହସ୍ୟ ବୁଝି ପାରିଲା ନାହିଁ । ତାର ଉନ-ଷରବ ହୃଦୟରେ ବିସ୍ତାରିତ ଯୌବନର ଶୁଭ ଅଧିକାର ହୋଇ ନାହିଁ । ଶୁଦ୍ଧାଣିରେ ମଧୁରତା ବ୍ୟଞ୍ଜିତ ମାଦକତାର ସୃଷ୍ଟି ହୋଇ ନାହିଁ । ସେ ଖାଲି କହିଲା, ଏ ସବୁ କଥା କ'ଣମ ?

ସୁଜାତା ପଚାରିଲା, ଆଚ୍ଛା ତୁମ ଘର ?

ଆମ ଘର······

କେତେ ବାଟ କଟକରୁ ?

ଭୂଗୋଳରେ ପଢ଼ିଥିଲି ୧୫ ମାଇଲ ।

ବନ୍ଦୁ ଶେଷକୁ ଅସ୍ୱସ୍ତି ଅନୁଭବ କଲା । କହିଲା-ଆଚ୍ଛା ତମ ନାଁ କ'ଣ ?

ମୋ ନାଁ···ମୋ ନା— ଭୁବନ ।

ଏତିକିବେଳେ ଭୁବନ ଡାକିଲା—ବନ୍ଦୁ, ଏଣେ ଆ-ସଞ୍ଜ ହେଲାଣି ଯିବା···

ବନ୍ଦୁ ଚାଲି ଆସିଲା । ପଛରେ ସୁଜାତା । ଭୁବନ ବନ୍ଦୁକୁ କହିଲା, ମାଉସୀଙ୍କି ନମସ୍କାର କର । ବନ୍ଦୁ କଲା ।

ବନ୍ଦୁ କହିଲା — ଭାଇ, ତମ ନାଁଟା ସାଙ୍ଗା ଏ ମାଉସୀଙ୍କ ଝିଅ ନାଁ ଦେଇଥା—ତମେ କହିଁ ଏଠି ମହାପ୍ରସାଦରେ ସଙ୍ଗାତ ବସୁନା ?

ଭୁବନ ସୁଜାତାର ଦୁଷ୍ଟାମି ବୁଝି ପାରିଲା । ମାଉସୀ କହିଲେ, କ'ଣ ?

ହଁ ଏମାଙ୍କ ନାଁଟା ଭୁବନ ।

ଭୁବନ ଓ ସୁଜାତାର ମା ହସି ଉଠିଲେ । ସୁଜାତା ତଳକୁ ଅନାଇ ଅପରାଧୀ ପରି ଛିଡ଼ା ହୋଇ ଥାଏ । ତା'ର ମା' କହିଲେ, ସୁଜାତା କଥା କ'ଣ ? ବନ୍ଦୁ କହିଲା, ସୁଜାତା କିଏ ମାଉସୀ ?

ଏଇ—

ଓଃ-ଏ ଝିଅ ମୋତେ ବର୍ତ୍ତମାନ କହିଲେ ଯେ ତାଙ୍କ ନାଁ ଭୁବନ—ସେଇଥିପାଇଁ କହୁଥିଲି ନାଁ ··

ମାଉସୀ ଟିକେ ଛଳନା କରି ରାଗିଲେ । କହିଲେ-ସୁଜାତା, ଏକ ଦୁଷ୍ଟାମି ତୋର ?

ଅପରାଧୀ ସୁଜାତା ନୀରବ ରହିଲା । ଭୁବନ କହୁଁନ ଜାଣିଲା ପରି ପଚାରିଲା, ସୁଜାତା, କଣ ପାଠ ଶାଠ ପଢ଼ୁଚ ?

ହଁ...ଗାର୍ଲସ ଇସ୍କୁଲରେ ।

ଓଃ ସେଇଥିପାଇଁ ଏତେଦୂର ଫାଜିଲ...

ଫାଜିଲ କିଏ—ସୁଜାତା ମନେ ମନେ ଆଲୋଚନା କଲା, ଫାଜିଲ କିଏ ମୁଁ ନା ତମେ...କିଛି କହି ପାରିଲା ନାହିଁ ।

ବୁଲାଚଲା କରୁ କରୁ ଭୁବନ ସୁଜାତା ଆଡ଼କୁ ଚାହିଁ ପଚାରିଲା, ଆପଣଙ୍କ ବାପା କଣ କରନ୍ତି ସୁଜାତା ? ଥଙ୍ଗ ଥଙ୍ଗ କଣ୍ଠରେ ସୁଜାତା କହିଲା—କଣ୍ଟ୍ରାକ୍ଟର ଓ ଖାଣ୍ଟି ଓଡ଼ିଆରେ କହିଲେ ଠିକାଦାର ।

ବନ୍ଧୁ ପଚାରିଲା, ଭାଇ ଚାଲ ଯିବା...

ସୁଜାତା କହିଲା, ଯିବତ...ଏଠି କଣ ରହୁଛୁ କିଏ ?

ଏତିକିବେଳେ ବୁଲାଚଲା କରୁ କରୁ ଭୁବନର ମା' ଓ ତା'ର ସାନ ଭାଇ ଆସି ସେଇଠି ପହଞ୍ଚିଲେ । ବନ୍ଧୁକୁ ଦେଖି କହିଲେ ଏତେବେଳ ଯାଏ ଏଠି କଣ କରୁଛ ?

ଧନୀ ଜମିଦାର ଅଭିଜାତ ଘରର ବୋହୂ-ବେଶରେ ବେଶ୍ ସୁନ୍ଦର ଦାମିକା ପହରଣ, ଦେଖିଲେ ଜଣାପଡ଼ିବ ମହତ ହୃଦୟର ଚିହ୍ନ । ଆଭିଜାତ୍ୟ ରହିଛି, ମାତ୍ର ଗର୍ବ କିମ୍ବା ଅଭିମାନ ନାହିଁ ।

ଭୁବନ ପରିଚୟ କରାଇଗଲା । ଦୁଇଟି ପରିବାରର ଏହି ଆକସ୍ମିକ ପରିଚୟରେ ତରୁଣ ତରୁଣୀଙ୍କର ହୃଦୟରେ ଆନନ୍ଦର ଢେଉ ନାଚି ଉଠିଲା । ମା'ଙ୍କ ଇଙ୍ଗିତରେ ସୁଜାତା ଭୁବନର ମା' ଗୌରୀ ଦେବୀଙ୍କୁ ପ୍ରଣାମ କଲା । ଗୌରୀ ଦେବୀ ଝିଅଟିର ଢଙ୍ଗରଙ୍ଗ ଦେଖିବାକୁ ଲାଗିଲେ । କହିଲେ, ଏଇ ଝିଅଟି ନାଁ ଆଉ କୋଳରେ କଣ ?

ଆଉ ପୁଅଟିଏ ଓ ଝିଅଟିଏ...

ଜଣା ପଡ଼ିଲା ଦୁଇଟି ପରିବାର ଅଂଗତର ଇତିହାସ । ସମାଜର ପରିବର୍ତ୍ତନରେ ପରିବାରର ଗତି ବଦଳି ଯାଉଛି । କେହି ବୁଝୁଛି, କେହି ବୁଝୁ ନାହିଁ ।

ସୁଜାତାର ମା' ଉଡି ଦେଖି କହିଲେ, ଭୁବନ, ମାଙ୍କୁ ନେଇ ଆଜି ବୁଲି ଆସ ତଟୀ ଆଡ଼େ ।

ଗୌରୀ ଦେବୀ ମନା କଲେ । କହିଲେ, କାଲି ଦେଖା ହେବ ।

ସଞ୍ଜ ଗଡ଼ିଗଲାଣି । ଅଦୂରେ ସମୁଦ୍ରର ଗର୍ଜନ ଶୁଭୁଛି— ଆକାଶରେ ଚନ୍ଦ୍ର ଉଠୁଛି···ଅନନ୍ତ ନୀଳିମା ଚାରିଆଡ଼େ ଅସୀମ ଜହ୍ନର ବାଲୁଚରରେ ଝଙ୍କି ନାଚି ଯାଉଛି ।

ସୁଜାତା ଫେରୁଛି—ଭୁବନ ଫେରୁଛି—ତା'ର ମନେ ହେଉଛି, ସୁଜାତାକୁ ନେଇ ସେ ଆଜି କେତେ ସମୟ ଏଇ ସାଗର ପୁଳିନରେ ବସି ପ୍ରକୃତିର ସୌନ୍ଦର୍ଯ୍ୟ ଉପଭୋଗ କରନ୍ତା ।

ତା' ହେଲା ନାହିଁ । ବୁକୁର ପିପାସା ବୁକୁ ଭିତରେ ମରିଗଲା । ମାତ୍ର ଆଶା ରହିଲା ଅଦୂର ଭବିଷ୍ୟତ ପାଇଁ ।

ଗଲାବେଳେ ଭିଦୁକୁ ଟିକେ ଚମୁଟି ଦେଇ ସୁଜାତା ପଚାରିଲେ, ଭିଦୁ, କାଲି ଆମ ଘରଆଡ଼େ ଯିବ ! ସଙ୍ଗୀତ ବସିବ ।

ନାଇଁ ନାଇଁ ତୁମେ ବଡ଼ ମଟଛର । ଗାଲଙ୍କ ନା କହି ମୋତେ ଭୁଲାଇ ଦେଲ । ମୁଁ ତୁମ ସାଙ୍ଗରେ ସଙ୍ଗୀତ ବସିବି ନାହିଁ ।

ଭୁବନ ଫେରି ଚାହିଁଲା, ସୁଜାତାକୁ । ଦେଖିଲା, ତାର ଆଖି ଦୁଇଟି ସ୍ୱପ୍ନଭରା ।

× × ×

ମହୋଦଧିରେ ସ୍ନାନ କରିବା ପାଇଁ ଗୌରୀଦେବୀ ଓ ଉଷା ଦେବୀଙ୍କର ବେଶୀ ଆଗ୍ରହ । ସୁଜାତାର ବାପା ମଧ୍ୟ ଏଥିରେ ସମ୍ମତ ହେଲେ ।

ବେଳାଭୂମିରେ ସ୍ନାନ ପାଇଁ ତିଆର ହେଲେ ସମସ୍ତେ । ବନ୍ଦୁ ଓ ସୁଜାତା ଲକ୍ଷ୍ୟ କରୁଥିଲେ । ଲହରୀ କିମିତି ଉଠୁଛି, ପଡ଼ୁଛି, ଆସୁଛି, ଯାଉଛି, ଆଉ କେତେ ପିଲା ଓ ଝିଅ ଉପର ହସି ହସି ଲହଡ଼ି ଭାଙ୍ଗୁଛନ୍ତି ।

ଗୌରୀଦେବୀ ଓ ଭକ୍ତଦେବୀଙ୍କୁ ନେଇ ଭୁବନ ଓ ସୁଜାତାଙ୍କର ବାପା ସମୁଦ୍ର ମଧ୍ୟକୁ ପଶିଗଲେ । ପିଲାଗୁଡ଼ିକ ବେଳା ଉପରେ ଚାଲିଲେ ବସିଲେ । ଲହଡ଼ି ଭାଙ୍ଗିବା ପରେ, ଗୌରୀଦେବୀ ଓ ଭକ୍ତଦେବୀ କୂଳକୁ ଫେରି ଆସିଲେ ।

ସୁଜାତା କହିଲା, ବୋଉ ମୁଁ...

ବନ୍ଦୁ କହିଲା, ବୋଉ ମୁଁ ।

ଦୁଇଜଣଯାକ ଚାଲିଗଲେ । ଆନନ୍ଦରେ ସୁଜାତାର ହୃଦୟ ପୂରି ଯାଇଛି । ବାପା ତା'ର ତା'କୁ ଲହଡ଼ି ଆସିଲା ବେଳେ ଟିକଏ ଉହୁଁ କ ଉଠିବା ପାଇଁ କହିଲେ । ସୁଜାତା ଉହୁଁକ ଉଠିଲା । ଅନାବୃତ ବକ୍ଷ ଓ ପ୍ରଫୁଲ୍ଲ ମୁହଁଟି ଭୁବନକୁ ଆହୁରି ସୁନ୍ଦର ଓ ନୈସର୍ଗିକ ବୋଧହେଲା । ଏକ ଦୃଷ୍ଟିରେ ସେ ଚାହିଁ ରହିଲା କ୍ଷଣକାଳ ପାଇଁ ।

ବନ୍ଦୁ ଲହଡ଼ି ଆସିବା ଦେଖି ଝୁଙ୍କି ଉଠିଲା । ଲହଡ଼ି ଚାଲିଗଲା । ପୁଣି ଆଉ ଏକ ଲହଡ଼ି ଆସିଲା । ଭୁବନ କହିଲା, ବନ୍ଦୁ, ଉଠିଯା—

ବନ୍ଦୁ ଉଠି ପାରିଲା ନାହିଁ । ତା' ଉପରେ ଲହଡ଼ି ମାଡ଼ିଗଲା । ମୁଣ୍ଡର ବାଳରେ ଖାଲି ବାଲି...ବନ୍ଦୁ ଉଠି ଚାଲି ଆସିବାକୁ ବସିଲା, ଭୁବନ କହିଲା, ଆଉ ବନ୍ଦୁ...

ନା...ବୋଲି କହି ସେ ଅଳ୍ପ ଜଳକୁ ଚାଲି ଆସିଲା । ଲହଡ଼ି ଆସୁଛି, ଯାଉଛି, ବନ୍ଦୁ ଠିଆ ହୋଇଛି ।

ସୁଜାତା ଲହଡ଼ି ଉଠିଲେ ଡାପି ଉଠୁଛି । କୌତୂହଳରେ ସେ ଲହଡ଼ି ଉଠାଣିରେ ମୁଣ୍ଡ ନଇଁ ଦେଲା । ଲହଡ଼ିଟା ତାର ଦେହ

ଉପରେ ଭାଙ୍ଗିଗଲା, ଗଡ଼ିଗଲା, ଭୁବନ ଚାହିଁଛି । ନିକଟରେ ତାର ବାପା ମଧ୍ୟ ଚାହିଁଛନ୍ତି । ଲହଡ଼ି ଫେରି ଗଲାବେଳେ ସୁଜାତା ଆଉ ସେଠାରେ ନାହିଁ—ସେ ବୁଡ଼ି ଯାଇଛି—ଦୂରକୁ ଚାଲି ଯାଇଛି ।

ହଠାତ୍ ଭୁବନର ହୃଦୟରେ ଯନ୍ତ୍ରଣା···କ'ଣ ହେଲା ସୁଜାତାର ? ପରକ୍ଷଣରେ ସେ ସମୁଦ୍ର ଭିତରକୁ ପଶିଗଲା । ସୁଜାତା କାହିଁ ? ଅପର ଲହଡ଼ିଟି ପୁଣି ମାଡ଼ି ଆସିଲା । ଭୁବନର ପାଖଦେଇ ସୁଜାତାର ନିମଗ୍ନ ଦେହଟା ଚାଲି ଯାଉଛି ବେଳାଭୂମିକୁ—ଭୁବନ ତାକୁ ଧରି ପକାଇଲା । ଲହରୀର ସୋତରେ ଭୁବନ ମଧ୍ୟ ଝୁଙ୍କି ହୋଇ ଆସିଛି ଉପରକୁ । ବାହୁର ଭିଡ଼ଦେଇ ସେ ସୁଜାତାକୁ ଉଠାଇବାକୁ ଚେଷ୍ଟାକଲା । ଜଳ ଜରଜର ଲାବଣ୍ୟ ଦେହଟା ତାର ଭୁବନ ଦେହରେ ବାଜିଲାକ୍ଷଣି ଭୁବନ ଦେହଟା ଶିହରେଇ ଉଠିଲା, ଆନନ୍ଦ ଓ ଆଶଙ୍କାର ତୀବ୍ର ତପ୍ତ ଅନୁଭୂତିରେ—ସେ ତାକୁ ଉଠାଇ ଧରିଲା । ଦେଖିଲା ବେଳକୁ, ସୁଜାତା ନଗ୍ନ···ନଗ୍ନ ତାର ଅଫୁରନ୍ତ ଯୌବନ···ଲୁଗା ନାହିଁ । ଭୁବନ ପ୍ୟାଣ୍ଟ ପିନ୍ଧିଛି···ଲୁଗାଟା ତାର ସୋତରେ ଗଡ଼ିଭାଇ ହୋଇ ଯାଇଛି । ତାକୁ ଭାରି ଲାଜ ମାଡ଼ିଲା ! ସୁଜାତା ପ୍ରାୟ ବେହୋସ···କେଶଗୁଚ୍ଛ ବିକ୍ଷିପ୍ତ ଭାବରେ ମୁହଁ ଉପରେ ପଡ଼ିଛି—ସେ ଦେଖି ପାରୁନାହିଁ ।

ସୁଜାତାର ବାପା ସୁଜାତାକୁ ଦେଖି ବଡ଼ ବ୍ୟଗ୍ର ହୋଇ ଭୁବନ ନିକଟକୁ ଚାଲି ଆସିଲେ ।

ଭୁବନ ଡାକିଲା, ସୁଜାତା···

ସୁଜାତାର ଚେତା ପଶିଲା । ନିଜର ଅସଂଯତ କେଶ ବାସକୁ ସଜାଡ଼ି ସଜାଡ଼ି ସେ କହିଲା, ଆଉ କାହିଁକି···ବାବୁ !

ନିଜେ ତ ପୋଉ ଲହଡ଼ି ଭାଙ୍ଗିଲା, ବାବୁକୁ ଖୋଜୁଛି-ଏତିକି କହିଲେ ତାର ବାପା—ସେ ବଡ଼ ଲଜ୍ଜିତ ହେଲା । ନିଜର କେଶବାସ ସମ୍ଭାଳି ସେ ଲାଜରେ କୂଳକୁ ଉଠି ଆସିଲା ।

ଭୁବନ ମଧ୍ୟ ଆସିଲା । ତାର ବାପା ତାକୁ କହିଲେ, 'ଟିକେ ତୋର ଭୟ ନାହିଁ, ତତେ ମୁଁ ମନା କରୁଚି ବୁଡ଼୍ ନା...ବୁଡ଼ି ଯାଉଚୁ...

ଭୁବନ କହିଲା, ମୋ ଭଉଣୀ ବବୁ ଯଦି ଏପରି ଅବାଧ୍ୟ ହୋଇଥାନ୍ତା, ତା'ହେଲେ ସାଙ୍ଗେ ସାଙ୍ଗେ...ତାର ହାତ ଦୁଇଟା ଉଠିଗଲା—ବନ୍ଦୁ କହିଲା, ଭାଇ, ଏ କଣ ସଙ୍ଘାତକୁ ମାଡ଼ ଦେବ !

ସମସ୍ତେ ହସି ଉଠିଲେ । ସୁଜାତାର ମୁଣ୍ଡ ତଳକୁ ହୋଇଗଲା । ଭୁବନ ପୁଣି ଲହଡ଼ି ଭିତରକୁ ପଶିଗଲା । ରତ୍ନଦେବୀ କହିଲେ, ଚନ୍ଦୁ ମୋର ଭାରି ଗୁଲଖ ।

ଗୌରୀଦେବୀ ଉତ୍ତର ଦେଲେ, ତାର ଗୁଲଖି କେବଳ ସୁଜାତା ପାଖରେ ।

ଭୁବନ ଚାହିଁଲା—ସୁଜାତା ଦେଖୁଚି । ଲହଡ଼ି ଉଠୁଚି, ପଡ଼ୁଚି—ବନ୍ଦୁ ଗୁହିଁଚି । କିନ୍ତୁ ସୁଜାତାର ମନେ ହେଉଚି, ସତେ ଯେମିତି ଭୁବନ ତା'ର ଲହଡ଼ି ପରି ମାଡ଼ି ଆସୁଚି, ପୁଣି ଥରେ ତାକୁ ଆଲିଙ୍ଗନ ପାଇଁ ଆହ୍ୱାନ ଦେଇ...ସେ ଆଉ ଯାଇ ପାରୁନାହିଁ...

× × × ×

ଫେରିବାକୁ ହେବ ।

ପ୍ରତି କ୍ଷେତ୍ରରେ, ପ୍ରତି ଦିଅଁ ଦେବତାଙ୍କ ନିକଟରେ ସୁଜାତାର ପ୍ରାର୍ଥନା, ସୁଜାତାର ଅଭିଳାଷ, କେହି ବୁଝନ୍ତି ନାହିଁ । ଅନ୍ତରର ବ୍ୟାକୁଳତା ଦେବତାଙ୍କୁ ନିବେଦନ କରିବା ବ୍ୟତୀତ ସୁଜାତା ଅନ୍ୟ କିଛି ଭାବି ପାରିନାହିଁ । କୋମଳ ବୟସର କଞ୍ଚା ଅଭିଜ୍ଞତାରେ ସେ ଚନ୍ଦୁକୁ ପଚାରେ, ବନ୍ଦୁ, ମତେ ମନେ ପକାଉଥିବୁ, ଚିଠି ଦେବୁ ।

ଚନ୍ଦୁ ଘର ଠିକଣା ଟିପି ନେଉଚି । ହସି ହସି କହେ, ସୁଜାତା, ତମେ ମୋର କ'ଣ ହେବ ? ମୁଁ କ'ଣ ବୋଲି ତମକୁ ସମ୍ବୋଧନ କରିବ ?

କାହିଁ—ନୂଆ…

ତାର ଭାଷା ମରିଗଲା । କଣ୍ଠ ଅଟକି ଗଲା । ଇନ୍ଦୁ ପଚାରିଲା । କ'ଣ କହୁନାଁ ? କହୁଥିଲ ଯେ…

ହଁ, କହୁଥିଲି ଯେ—ସୁଜାତା ଟିକେ ଭାବି ଚିନ୍ତି କହିଲା, ଗାଇବ 'ସଙ୍ଗୀତ'

ଇନ୍ଦୁ ହସିଲା ।

ସଞ୍ଜବେଳେ ଭୁବନ ଓ ଇନ୍ଦୁ, ସୁଜାତା ବୁଲି ଆସିଲେ ସମୁଦ୍ର କୂଳକୁ । ବୁଲୁ ବୁଲୁ ସୁଜାତା ପଚାରିଲା, ସବୁ ଦେବତା ତ ଏ କ୍ଷେତ୍ରରେ ଅଛନ୍ତି, କିନ୍ତୁ ସେ ଦେବତା…

ଭୁବନ ଉତ୍ତର ଦେଲା,…ସେ ଅନଙ୍ଗ…ପ୍ରେମର ଦେବତାର ରୂପ ନାହିଁ…ଯିଏ ଅନଙ୍ଗ, ଅର୍ଥାତ୍ ଦେହହୀନ, ତାକୁ ବୋଧ ହୁଏ କୌଣସି ଶିଳ୍ପୀ ରୂପ ଦେଇ ପାରି ନାହିଁ କିମ୍ବା ସେ ଦେବତାର ରୂପର କଳ୍ପନା ମଧ୍ୟ କରି ପାରି ନାହିଁ । ନ ହେଲେ ଓଡ଼ିଆ ଶିଳ୍ପୀ ଛାଡ଼ିଥାନ୍ତା ? Love ବା କନ୍ଦର୍ପର ମୂର୍ତ୍ତି ଟିଏ ତିଆରି ନ କରି… ମନ୍ଦିରରେ ଏତେଦୂର ନଗ୍ନତମ କଳାର ଆତ୍ମପ୍ରକାଶ କରାଇ ପାରିଛି ଯିଏ ପଥର ଦେହରେ…

ପୁଣି ଲହଡ଼ି ମାଡ଼ି ଆସୁଛି—ଅବାରି ମାଡ଼ି ଆସୁଛି । ଦୁଇଟି ସ୍ୱତନ୍ତ୍ର କସାର ପକ୍ଷୀ—ବସାକୁ ଅତି ଚଞ୍ଚଳ ଫେରିବାକୁ ହେବ । ଆଶଙ୍କା ଓ ଆନନ୍ଦରେ ହୃଦୟ ଫାଟି ଉଠୁଛି ।

ଭୁବନ କହିଲା, ଇନ୍ଦୁ, ଲହଡ଼ି ଭାଙ୍ଗିବୁ ଯା—

ନା ସଙ୍ଗୀତ ଯାଆନ୍ତୁ—

ଭୁବନର ଆଖି ଆଗରେ ସୁଜାତାର ନଗ୍ନ ସୌନ୍ଦର୍ଯ୍ୟ ଆଙ୍କି ହୋଇଗଲା । ବେଳାଭୂମି ଟିକିଏ ନିର୍ଜନ ଲାଗୁଛି, ସୁଜାତା ଭୁବନକୁ ଛାଡ଼ି ପାରିଲା ନାହିଁ । ଗଦଗଦ କଣ୍ଠରେ କହିଲା, ଇନ୍ଦୁ…ମୁଁ

ଯେତେବେଳେ ଲହଡ଼ ଭାଙ୍ଗୁଥିଲା, ତୋ ଭାଇ କ'ଣ କରୁଥିଲେ ଦେଖିଚୁ ?

କ'ଣ, ତୁମେ ତ ଏକ୍‌ବାରେ ବେହୋସ୍···ମୁଣ୍ଡର ଭାବ ବିକ୍ଷିପ୍ତ ହୋଇ ଗୁରୁଆଡ଼େ ପଡ଼ିଥିଲା···ତୁମେ କିଛି ଦେଖି ପାରୁ ନ ଥିଲ, କି ଶୁଣି ପାରୁ ନ ଥିଲ···ଆଉ ଦରଲଙ୍ଗଳା ଭାବରେ ଲହଡ଼ଟେ ପୁଣି ଗଡ଼ି ଗଡ଼ି ଆସି ଭାଇଙ୍କ ପାଖରେ ଲିଭିଲେ !

ହଁ···ଲାଗିଲା ମାତେନ ମୁଁ କ'ଣ କଲି ଭନୁ, ତମର ଭାଇଙ୍କର କଣ୍ଠକୁ ଦେମା ହାତ ଦୁଇଟିରେ ଯାବୁଡ଼ି ଧରିଲି···କିନ୍ତୁ କିନ୍ତୁ ସୁଜାତାର ମୃଣାଳ କୋମଳ ବାହୁ ବିସ୍ତାରିତ ହୋଇ ଉଠିଲା— ସ୍ୱପ୍ନ ବିଭୋର ଭୁବନ ଅଜାଣତରେ ତା'ର ହାତ ଦୁଇଟିକୁ ଧରିନେଇ କହିଲା, 'ଭନୁ, ମୁଁ ଏମିତି ଭାବରେ ସୁଜାତାକୁ ଧରିନେଲି ନିଜ ଦେହ ଉପରେ···ନ ହେଲେ ମୁଁ ମଧ୍ୟ ଲହଡ଼ର ଫେରନ୍ତି ବେଗରେ ଚାଲି ଯାଇଥାନ୍ତି ଦୂରକୁ···ସମୁଦ୍ର ମଝିକି·· ବହୁତ ଦୂରକୁ······ ବହୁତ ଦୂରକୁ ବିଦ୍···

ଦୁଇଟି ବକ୍ଷର ପରଶ···ପିପାସିତ ଓଠ ଦୁଇଟି ଅର୍ଦ୍ଧସ୍ଫୁଟ ଅବଶ୍ୱାସରେ ରଞ୍ଜିତ ହୋଇ ଉଠିଲା । ଭନୁ କହିଲା, 'ହେଇ, ପୁଣି ଏକ ଉଚ୍ଛଳ ଲହଡ଼ ମାଡ଼ି ଆସୁଚି···

ସୁଜାତାର ରକ୍ତିମ ଓଠରେ, ଭୁବନର ଅଶେଷ ବ୍ୟଗ୍ର ଓଠ ଦୁଇଟି ଲାଗିଗଲା···

ଭନୁ ଚିତ୍କାର କରି ଉଠିଲା । ଲହଡ଼ ଆସିଗଲା ପାଖକୁ···

ସୁଜାତା ଖସିଗଲା ପଛକୁ···

ଭନୁ କହିଲା, 'ସଙ୍ଗାତ—ତୁମେ ମୋତେ ଗୋଟିଏ ରଚନା ଏ ବିଷୟରେ ଲେଖି ଚିଠିରେ ପଠାଇବ ।

ସୁଜାତା ଓ ଭୁବନ ହସି ଉଠିଲେ ।

ଦୁହିଁ ଅଲଗା ଅଲଗା ହୋଇ ଯାଇଚି ।

## ❋ ଆଠ ❋

ବିନ୍ଦୁ କହିଲା, ଭାଇ, ବାପା ଆଜି ବିରକ୍ତ ହେଉଥିଲେ ତୁମ ଉପରେ ?

କାହିଁକି ?

କ'ଣ ଚିଠି ଏତେ ଆସୁଛି, ତୁମ ନାଁରେ—କେବେ ଚିଠା କେବେ ଖାଲି ଡାକ ପିଅନ ଆସୁଛି, ଚିଠି ଦେଇ ଯାଉଛି ।

ଭୁବନ ନୀରବ ରହିଲା । ବିନ୍ଦୁ ପୁଣି ପଚାରିଲା, କିଏ ସତେ ସେଇ ସୁଜାତା ଅପା ଆପଣଙ୍କ ପାଖକୁ ଚିଠି ଦେଉଛନ୍ତି ?

ନା, ସେ କାହିଁକି ମୋ ପାଖକୁ ଚିଠି ଦେବ ! ସେଥର ତ ଖଣ୍ଡେ ଚିଠି ତୋ ପାଖକୁ ଦେଇଥିଲି । ଆଚ୍ଛା, ବାପା ଆଜ କ'ଣ କହୁଥିଲେ ?

ବାପା କହୁଥିଲେ, ତମର ବିବାହ କଥା । ବୋଉ ସେଇ ସୁଜାତା ଅପା ଖବର କହିଲା । ବାପା ମନା କଲେ, କହିଲେ ଭୁବନ ଆଗେ ଇଂଜିନିଅରିଂ ପାଶ କରୁ ପରେ ଦେଖାଯିବ । ପିଲାଟିକୁ ଏତେ ଶୀଘ୍ର ବିବାହ ଦେଲେ ତାର ଭବିଷ୍ୟତ ଭଲ ହେବ ନାହିଁ ।

ଭୁବନ ସବୁ ଶୁଣିଗଲା । କ୍ଷଣକାଳ ଭାବି କହିଲା —ବିନ୍ଦୁ, ତଉ ···ତୁ ଯା—

ବିନ୍ଦୁ ଚାଲିଗଲା । ଭୁବନ ତାର ଛୋଟ ରୁମ୍‌ରେ ବସି ନିଜର ଭବିଷ୍ୟତ କଥା ଭାବୁଛି । ତହସିଲଦାର ଆସି ପହଞ୍ଚି ଗଲେ । କହିଲେ, ସାଆନ୍ତେ କହିଛନ୍ତି ଆପଣ ଟିକିଏ କଚେରୀକୁ ଯିବେ ।

ମୁଁ କଚେରୀ ଯାଇ କଣ କରିବି ।

ଟିକିଏ ବୁଲି ଆସିବେ ।

ଆଚ୍ଛା, ଯିବା ।

ସେ ଭୁଲିଗଲେ । ଭୁବନ ସୁଜାତା କଥା ଶୁଣୁ ଶୁଣୁ ତାଙ୍କର ଘର ସମ୍ପତ୍ତି କଥା ମଧ୍ୟ ଭୁଲିଗଲେ । ବିରାଟ ଦ୍ୱିତଳ, ମଟର, ଟ୍ରକ୍··· ବିସ୍ତର ପଇସା, ନାମଜାଦା ଠିକାଦାର ।

ତୁଳନା କଲେ ଏ ଦେଶରେ ସାମନ୍ତବାଦୀ ଅର୍ଥନୀତି ଉପରେ କ୍ରମେ କ୍ରମେ ଶିଳ୍ପ ବିପ୍ଳବ ଆଗରେ ମରି ଯାଉଚି । କାହିଁ ସୁନ୍ଦରୀଙ୍କର ବିରାଟ ଜମିଦାରୀ, ଚଉପାଢ଼ି ଏବଂ ପୁରୁଣା ମହାଜନୀ ଘର—ଆଜି···

ପ୍ରଜା ସାଧାରଣ ବେଶ ଶିକ୍ଷିତ ହୋଇ ଉଠିଛନ୍ତି । ଜମିଦାରଙ୍କ ସାମାନ୍ୟ ଅତ୍ୟାଚାରରେ ସେମାନେ ଦଳବଦ୍ଧ ହୋଇ ଆକ୍ରମଣ କରିବାକୁ ପ୍ରସ୍ତୁତ ।

ହଳିଆ ମୂଲିଆ ଦେଶର ଜନଶକ୍ତି ଜାଗରଣରେ ମାତି ଉଠୁଛନ୍ତି । ସେ ନିଜ ଆଖିରେ ଦେଖିଛି, ଦିନେ ଏଇ ହଳିଆ ମୂଲିଆ ଆପେ ଆପେ ଆସି ବାରକାମ କରି ଦେଇ ଯାଉଥିଲେ । ଏବେ ସକାଳୁ ବାପା ଟିକଏ ମୁହଁ ନ ମାରି ଆସିଲେ ନ ଚଳେ । ଜମିବାଡ଼ିରୁ ଯାହା ଆୟ ହୁଏ ସେତିକ ପରିବାରର ସମସ୍ତ ଖର୍ଚ୍ଚରେ ଗଳିଯାଏ । ନଗଦ ଟଙ୍କା ପଇସାର ଖିଅ ନେଇ ଲାଭ ଉଠାଇବାର ଫନ୍ଦ ଏବେ କେବଳ କଣ୍ଟ୍ରାକ୍ଟର ଏବଂ ବ୍ୟବସାୟୀମାନଙ୍କୁ ହିଁ ଜଣା ।

ଭୁବନ ଭାବିଲା ବାପାଙ୍କୁ କହିବ, ସେ ଜମିଦାରୀ ବିକ୍ରୟ କରି ବରଂ କିଛି ବ୍ୟବସାୟ କିମ୍ବା ଠିକାଦାରୀ କରିବେ ।

×   ×   ×

ତାର କଥା ଶୁଣି ସୁନ୍ଦରୀ ରାଗି ଉଠିଲେ । କହିଲେ, ଏ ବଂଶର ଚନ୍ଦ୍ର ପାଣ୍ଡିଆ ସନନ୍ଦ ଥିବା ଯାଏ, ସେ କେବେ ନିଜର ପୈତୃକ ସମ୍ପତ୍ତି ହସ୍ତାନ୍ତର କରିବେ ନାହିଁ । ସେ ଇତରଲୋକ ପରି ବ୍ୟବସାୟକୁ ମଧ୍ୟ ପସନ୍ଦ କରିବାକୁ ଅସମ୍ମତ । ତାଙ୍କର

ବଂଶଗତ ଉପାଧି ଅଛି । ଢାଲ ତରବାରୀ ଖଣ୍ଡା ପ୍ରମାଣ ଅଛି । ସନନ୍ଦ ଅଛି—ଏ କ'ଣ ନିରର୍ଥକ ?

ଭୁବନ ନିଜେ ଜଟେଶ୍ୱଙ୍କୁ ପାଇ ପ୍ରଜାମାନଙ୍କର ଆପତ୍ତି ଅଭିଯୋଗ ଶୁଣି ପାରୁଛି । ଆଗ ତାଙ୍କ ବଂଶଧରମାନେ ବଡ଼ ଅତ୍ୟାଚାର କରୁଥିଲେ । ଖାଲି ତାଙ୍କ ପିତାଙ୍କ ସମୟରେ ଅତ୍ୟାଚାରଟା ସିନା ନାହିଁ, କିନ୍ତୁ ପିଆଦା ତହସିଲଦାରଙ୍କ ଜୁଲମ ଛୁଟି ନାହିଁ ।

ନିଜର ଅର୍ଥନୀତି ଏବଂ ପ୍ରଣୟ ଏ ଦୁଇଟିର ବିଷମ ଆବର୍ତ୍ତରେ ଭୁବନର ତରୁଣ ମନ ବାରମ୍ବାର ଘୂରିବାକୁ ଲାଗିଲା । ନିଜର ଭବିଷ୍ୟତ ପଡ଼ି ରହିଛି, ତା ସାଙ୍ଗେ ପଡ଼ିରହିଛି ସୁଜାତାର ଅସରନ୍ତି ପ୍ରେମ ।

'ଯଦି ବାପା ରାଜି ନ ହୁଅନ୍ତି···

ସେ ଆଉ ଭାବି ପାରିଲା ନାହିଁ । ବୈଠକଖାନାରେ ବସି ରହି କେବଳ ସୁଜାତାର କଥାହିଁ ଭାବିବାକୁ ଲାଗିଲା । ଶିକାରକୁ ଗଲେ ତାର ମନେ ପଡ଼େ ସୁଜାତା ଥାଆନ୍ତା କି ? ସାମାନ୍ୟ ଟିକିଏ ଆମୋଦ ପ୍ରମୋଦରେ ସେ ମନେ କରେ ସୁଜାତାକୁ, ତାର ହୃଦୟ ଝୁରେ, ଆଖିର ପିପାସା ଶାନ୍ତ ହୁଏନା···

ଏବେ ସେ ବସିଛି, ପୋଷ୍ଟ ପିଅନ ଆସି କହିଲା, ବାବୁ, ତାର···ଭୁବନ ଚମକି ପଡ଼ିଲା, ଖୋଲି ଦେଖେ ବାପୁ ତାର ପରୀକ୍ଷାରେ ପାସ୍ ଖବର ଶୁଣି ଶୁଭ ଅଭିନନ୍ଦନ ଜଣାଇଛି । ଭୁବନ ଭାରି ଖୁସି ହେଲା ।

ଡାକ ପିଅନ ଖବର କାଗଜଟିଏ ଆଣି ଦେଲା ।

ଭୁବନ ଦେଖିଲା-ସେ ଖାଲି ସସ୍ତିଆ ପାସ୍‌ଟାଏ କରିଛି—ଆଉ ବାପୁ, ବାପୁ ? ତେବେ ବାପୁ କଣ ଫେଲ ?···

ସେ ଭାବି ପାରିଲା ନାହିଁ ।

ପିଅନ ପୁଣି ଚିଠିଟିଏ ବଢ଼ାଇ ଦେଲା—ଭୁବନ ଚିଠି ଚିରିଦେଲା, ସବୁଜ ନେଳିଆ ରାଇଟିଂ ପ୍ୟାଡରେ ଲେଖା, ପଢ଼ିଲା—

ହୃଦୟର ସର୍ବସ୍ୱ,

ମୋର ଅନ୍ତରର ଆଶ୍ଳେଷ ଗ୍ରହଣ କରିବ । ଆପଣଙ୍କୁ ପାଇ ମୁଁ ନିଜର ଜୀବନକୁ ଧନ୍ୟ ମନେ କରୁଛି, କିନ୍ତୁ ସତ କହନ୍ତୁ ମୋତେ, ମୁଁ କ'ଣ ପ୍ରକୃତରେ ଆପଣଙ୍କୁ ପାଇ ପାରିବ ? ମାଉସୀ କ'ଣ କହୁଥିଲେ ? ବାବୁ କ'ଣ କହୁଥିଲ ?

ମନେ ପଡ଼େ ସେଦିନ ବେଳାଭୂମିରେ ସାନ୍ଧ୍ୟଭ୍ରମଣର ସ୍ମୃତି—ତା' ଅପେକ୍ଷା ଆହୁରି ଅସହ୍ୟ ହୋଇ ଉଠେ ପୂର୍ବ ଦିବସର ଆକସ୍ମିକ ଅନୁଭୂତି ବିଷୟ ଭାବି ବସିଲେ—ଅସରନ୍ତି ସମୁଦ୍ରର ଅଗଣିତ ଲହରୀ ପରେ ଲହରୀ ଉଠି ଅଶାନ୍ତ ବିବ୍ରତ କରୁଛି ନିର୍ଜନ ବେଳା ପ୍ରାନ୍ତରକୁ—ଦିଗ୍‌ବଳୟର ଅସୀମ ଧାରରେ ଆକାଶ ପୃଥିବୀ ମିଶି ଯାଇଛି ଅନନ୍ତ ଆଶ୍ଳେଷରେ—

ବୋଧହୁଏ ସେଇ ବୃତ୍ରାସୁରର ଚଢ଼ାବାଲିରୁ ଆମେ ଦୁହେଁ ଖସି ଆସିଲେ ଲହରୀର ଉଚ୍ଛ୍ୱାସରେ···ନ ହେଲେକି ଯାହା ଦିନେ ହେଲେ ସ୍ୱପ୍ନରେ ଭାବି ନ ଥିଲି, ସେ ଘଟନାଟିର ଅଭିନୟ ହୋଇଥାନ୍ତା ଏତେ ଶୀଘ୍ର, ସେଇ ସମୁଦ୍ର ତୀରରେ, ପୁଣି ପରିବାରର ସମସ୍ତ ବନ୍ଧନ ଓ ପ୍ରତିବନ୍ଧକ ଆଗରେ ? ମୋର ଜୀବନ ଧନ୍ୟ ହୋଇଛି । ଆପଣ ମୋତେ ନିଜର ବକ୍ଷ ଉପରେ ଚାପି ଧରିଛନ୍ତି—ଆଉ ଥିବା ଏହା ଅପେକ୍ଷା ମୋର ଅଧିକ ସୌଭାଗ୍ୟ କ'ଣ ? ସତେ କ'ଣ ଦିନ ଆସିବ, ଯେତେବେଳେ ମୁଁ ଜଳକ୍ରୀଡ଼ାର ସ୍ମୃତି ଭୁଲି ସ୍ୱଚ୍ଛ କେଳିକ୍ରୀଡ଼ାର ଉପଯୁକ୍ତ ହୋଇ ପାରିବି ?

କାହାନ୍ତି ଆପଣ ? ଆଉ କାହିଁ ଥିବା ମୁଁ ?

ତୁମେ ଚାହିଁଥିଲ          ମୁହିଁ ଚାହିଁଥିଲି
ଥିଲୁ ଓ ଜଣ,
ଦୁହିଁଙ୍କ ଜୀବନ          ସୁଖେ ଚାଲିଥିଲା
ଦୁହିଁଙ୍କ ବନା—

×          ×          ×

ବାବୁ ଭଲ ଥିବ ଓ ମାଳତୀ ଆଦି ସମସ୍ତେ ଭଲ ଥିବେ । ଆପଣ କେବେ କଟକ ଆସିବେ ? ଆଚ୍ଛା, ମାଳତୀ କଣ ସତରେ ମୋ କଥା କେବେ କେବେ କହନ୍ତି ?

ସୁଜାତା

କି ଏକ ଅବ୍ୟକ୍ତ ଆନନ୍ଦରେ ଭୁବନର ହୃଦୟ ମନ ଉଲ୍ଲସିତ ହୋଇ ଉଠୁଥିଲା, ତା' ସେ ଜାଣେ ନାଁ । ଭାବ ପ୍ରାବଲ୍ୟରେ ସେ ନିଜେ ନିଜେ ଏତିକି କହି ଉଠିଲା—ଧନ୍ୟ ମାନସିଂହ—ତୁମେ ଆଜି ଅବା କ'ଣ ନ ଲେଖିଲ !

## * ନଅ *

ଅଞ୍ଜଳି ଥଟ୍ଟାରେ ପଚାରି ଦେଲା—ନାନୀ, ଭରତ ଏଥର ଏ. ଏସ୍‌ସି. ପଢ଼ିଲେ-ଆଉ ବାହାଘରଟା କେବେ ?

ସୁଜାତା କହିଲା, ତୋର ଖାଲି ସେଇ କଥା !

'ଆଚ୍ଛା, ତମ ଘରକୁ ଯିବା ଆସିବା ତ କରୁଥିବେ ସେ ତମର । ବେଶ୍ ସୁବିଧା ହେଉଥିବ, ମନ ଖୋଲି କଥାବାର୍ତ୍ତା କହିବାକୁ ।

କେମିତି କଥା କହୁଛ ତୁ ଅଞ୍ଜୁ—ମୁଁ ବୁଝିପାରେ ନାଁ । ବୈଠକ ଖାନାରେ ବସି ବସି ସେ ଅନେକ ସମୟ କାଟି ଦିଅନ୍ତି । ଭଲ ଘଣା ଏବଂ ବ୍ରିଜ୍‌ଖେଳ ଖେଳନ୍ତି ସେ ବାପାଙ୍କ ସାଙ୍ଗରେ । କେବେ କେବେ ମୋ ରୁମକୁ ଆସନ୍ତି, ଅନ୍ତତଃ ବୋଉ ଡାକିଲେ ।

ଓଃ ତା' ହେଲେ ତୋ ଲଭର ଖବର ମିଳିଲା, ନାଁ । କିନ୍ତୁ ସୁଜାତା, ସେଭଳି ଲୋକଗୁଡ଼ିକ ଖାଲି ଚୁପ୍ ବସିଥାନ୍ତି । ତୁ ଦେଖି ଖୁସି ବ୍ୟବହାର କରୁଥିବୁ । ହେଇତ ତମର ସେ [illegible] ଥିଲେ, କେତେ ସରଳ ଲୋକଟିଏ । ଆଉ ଏ ଯେଉଁ ଜଣକ ତମର, ଉପରକୁ ଦେଖା ଯାଉଛନ୍ତି ବେଶ ଭଲ, ମାତ୍ର ଭିତରେ···

ହଁ, ମୁଁ ତା ଜାଣେ । ଶୁଣିଲି, [illegible] କୁଆଡ଼େ ବୋଉଙ୍କୁ କହୁଥିଲେ, ମୋର ବିବାହ କଥା । ବୋଉ ଭୁବନ ବାବୁଙ୍କ କଥା କହିଲା । ସେ କୁଆଡ଼େ ବିରକ୍ତ ହୋଇ କହି ପକାଇଲେ, ଭୁବନ··· କ'ଣ ଗୋଟାଏ B. Sc ପଢ଼ୁଛି—ତାକୁ ପୁଣି ସୁଜାତକୁ ବିବାହ ଦିଆହେବ । ନାଁ ମୁଁ ଜଣେ ଏମ. ବି. ବି ଏସ୍. କୁ ଠିକ୍ କରିଛି, ତାଙ୍କୁ ଦେଖନ୍ତୁ ।

ବୋଉ କହିଲା, ଭୁବନବାବୁଙ୍କ ଘରର ମନ ଅଛି, ଆମର ମଧ୍ୟ ମନ ଅଛି—ମାତ୍ର କଥା ପଡ଼ୁ ନାହିଁ । ଦେଖାଯାଉ, ସେ କଥାତ ଅଛି । ସୁଜାତା ତା'ର ପାଠପଢ଼ା ଶେଷ କରୁ ।

ଅଞ୍ଜଳି କହିଲା, ହଁ ତୁ ଯୋଉ ପାଠ ଶାଠ ଏବେ ପଢୁଛୁ ତା' ତ ମା ଗଙ୍ଗେ ଜାଣନ୍ତି, ଖାଲି···

ତା' ତ ସତ ଅଞ୍ଜଳି ! ସନ୍ଧ୍ୟା ହେଲେ [illegible] ଆସି ଜୁଟନ୍ତି । ପଡ଼ାପଡ଼ି ଚାଲେ । ମୁଁ ଖାଲି ଆଖିରେ ସବୁ ଦେଖେ, ଶୁଣେ, ପଢ଼େ ଏବଂ ପୁଣି ଲୁହେଁ । ମାତ୍ର ମନରେ ମୋର ଭୁବନ ବାବୁଙ୍କ କଥା ।

ଅଞ୍ଜଳି, ସେ ଏବେ ଆଗ୍ରା ଯାଇଥିଲେ ମୋ ପାଇଁ ଗୋଟିଏ ସୁନ୍ଦର ତାଜମହଲ ଆଣିଛନ୍ତି !

ଓଃ ପ୍ରେମର ଆଦର୍ଶ ରୂପେ—ଧନ୍ୟରେ ପ୍ରଣୟ ! ତୁ ତ ଏଣିକି କେତେ କେତେ ଉପହାର ଆଣି ପହଞ୍ଚାଇବୁ !

ସେ ନୀରବ ରହିଲା ।

ଅଞ୍ଜଳି ପୁଣି ପଚାରିଲା, ତେବେ ତମର ଲଭ-ମ୍ୟାରେଜ୍ ସ୍ଥିର, ଆଉ ଆମେ କ’ଣ ତୋର ମନରେ ଥିବୁ ଯେ—ତେଣିକି ତ ତୁ ମୋର ମୁଁ ତୋର, ଆଉ ସମସ୍ତେ ପର ।

କାହିଁ ତମେ ସେତେବେଳକୁ ‘ମୁଁ ତୋର, ତୁ ମୋର’ ହୋଇ ଯାଇ ନ ଥିବ ଯେ—

କିଏ କହିଲା ?

ଉଷା,

ସେ କେମିତି ଜାଣିଲା—

ତମେ ତା’କୁ କହିଥିବ !

ନାଁ, ମୁଁ କାହାରିକୁ କିଛି କହି ନାହିଁ ସୁଜାତା ! ଏ ଜୀବନରେ ମୁଁ କାହାକୁ ଭଲ ପାଇ ପାରି ନାହିଁ । ତାର କାରଣ, ମୁଁ ଭାବେ ଭଲ ପାଇବା ଏ ବୟସରେ ସାଂଘାତିକ ବିପଦ । କିନ୍ତୁ ସୁଜାତା ମୁଁ କିଛି ବୁଝି ପାରେ ନାଁ, କାହିଁକି ଯେ ଜଣେ ଜଣକ ପାଇଁ ଏତେ ଦୂର ପାଗଳ ହୁଏ, ଏତେ ଦୁଃଖ କଷ୍ଟ ଓ ତ୍ୟାଗ ସ୍ୱୀକାର କରେ, କାହିଁକି ଏ ବୟସରେ ଜଣକ ପାଖରେ ଆତ୍ମ-ନିବେଦନ କରିବାର ବଳବତୀ ଇଚ୍ଛା ହୁଏ, ମୁଁ ଜାଣେ ନା । ମୁଁ ନିଜକୁ ଖୁବ ସଂଯତ ରଖିଛି । ଅର୍ଗଳବଦ୍ଧ ମନ୍ଦିର ପରି ନିଜତ୍ୱକୁ ବଜାୟ ରଖିଛି, କିନ୍ତୁ ସୁଜାତା, ଆଉ ପାରୁ ନାହିଁ । ହୃଦୟ ଉଦ୍‌ବେଳିତ ହୋଇ ଉଠୁଛି, ନିଜର ସର୍ବସ୍ୱ ଅନ୍ୟ କାହା ପାଦତଳେ ଢାଳି ଦେବାକୁ, କାହାର କୋଳରେ ମୁଣ୍ଡ ଗୁଞ୍ଜି ନିଜର ସୁଖ ଦୁଃଖର କାହାଣୀରେ ଆଣି

ଫୋଟିବାକୁ ମନ ଗୁମୁରୁଛି—ଦେହଟା ସାରା ଏମିତି ଏକ ଉତ୍ତପ୍ତ କମ୍ପନ ସୃଷ୍ଟି ହୋଇଛି ଯେ ମୁଁ ଭାବୁଛି, ଏ ଦେହ ମନଟା ଯେମିତି ଏ ବୟସରେ ଆଉ ମୋର ନିଜର ହୋଇ ରହିବ ନାହିଁ, ଯଦି ଦରଦୀର ଆଶ୍ରୟ ନ ମିଳେ···

ସୁଜାତା ଦୀର୍ଘଶ୍ୱାସ ପକାଇଲା ।

ଦୁଇଟି ଘଣ୍ଟା ବାଜିଲା । ଦୁଇଟି ତରୁଣୀ ଜୀବନର ଅଭାବ ଅନୁ-ଯୋଗ ଖାଲି ମର୍ମେ ମର୍ମେ ଅନୁଭବ କଲେ ।

ଗାର୍ଲ୍ସସ୍କୁଲରେ ପାଠ ପଢ଼ା ଚାଲିଛି । ସୁଧା ଧିରେ ଧିରେ ଆସି ଅଞ୍ଜଳିକୁ ପଚାରିଲେ, ଆମେ କାହିଁକି ଏତେ ଗୁଡ଼ାଏ ପରିଶ୍ରମ କରି ପାଠ ପଢ଼ୁଛେ ? ମୋର ତ ମନେ ହୁଏ, ବହିପତ୍ର ଗୁଡ଼ାକ କି ରାକ୍ଷସ, ଦିନ ଦିନ ଆମକୁ ପଲ ପଲ କରି ଶୋଷି ଖାଇ ଦେଉଛନ୍ତି ।

ସେଦିନ ସଂସ୍କୃତ ଥିଲା । କେହି ଘୋଷା ଘୋଷି କରି ଆସି ନାହାନ୍ତି, ତରତରରେ ଖାତାପତ୍ର କଡ଼ରେ ଧାତୁରୂପ ଟିପିଟାପି କରି ଦେଉଛନ୍ତି । ଅଞ୍ଜଳିର ପାଳି ପଡ଼ିଲା, ସେ କରି ପାରିଲା ନାହିଁ । ନୀରବ ହୋଇ ରହିଲା ।

ମାସୀମା ଗାଳି କରି କହିଲେ, କି (Backbench Leader) ପଚୁଆ ନେତା ··ଏଠିକି କ'ଣ ଚେହେରା ଦେଖାଇବାକୁ ଆସିଛ । କ'ଣ ଏ ଯୁଗ ହେଲା । ଏଣିକି ଏମାନେ ତ ଆଉ ପାଠଶାଠ ପଢ଼ିବେନି । କିଏ ପଢ଼ୁଛି ନା, କିଏ ଗପ କରୁଛି । କାହାର ଅଙ୍କ ହେଉନି ତ କାହାର ଇଂରାଜୀ ହେଉନି । ଆଉ ଫୁଲି ଫାଙ୍କମି ବେଳକୁ ଆଗଣ୍ଡିଆର ।

ସୁଧା ଅଞ୍ଜଳି ଆଡ଼େ ଚାହିଁଲା । ଆଖିର ଭାଷା ଆଖି ବୁଝିଲା । ଏଇ ମାସୀ ମା—ଦିନେ ହୁଁ ଏ ଟାଉନର ପରିଗଣୀ ବୋଲି ଖ୍ୟାତି ପାଇଥିଲେ—ଅଖ୍ୟାତି ଥିଲା ମଧ୍ୟ । ସୁଧା କିଛି କହି ପାରିଲା ନାହିଁ । ଚାହିଁଲା ନମିତା ଆଡ଼େ । ସେ ଭଲ ଝିଅ, କ୍ଲାସରେ ପ୍ରଥମ ହୁଏ ।

ନମିତା ମୁହଁରେ ହସ—
ନନ୍ଦମା ମୁହଁ ମୋଡ଼ ଦେଲା ।

କ୍ଲାସରେ ମାଷ୍ଟ୍ରେ ପୁଣି ପଢ଼ାଇବାକୁ ଲାଗିଲେ । ସୁଜାତାର ଏଥି ପ୍ରତି ଲକ୍ଷ୍ୟ ନାହିଁ । ସେ ଭାବୁଛି, କେତେ କ'ଣ ଭାବୁଛି—ଆକାଶ···ପାତାଳ—କ'ଣ ସେ ଥିଲା, ବର୍ତ୍ତମାନ ତାର ଅବସ୍ଥା କ'ଣ ହେଲାଣି .? ସେ ଆଉ ପଢ଼ାପଢ଼ି କରି ପାରୁ ନାହିଁ । ୧୦ମ ଶ୍ରେଣୀ । କୃପା ଉପରେ । ଭଗବାନ······

ସେ ପିରିଅଡ଼ଟା ଗଲା । ଯନ୍ତ୍ରଚାଳିତ ମୂର୍ତ୍ତିଟି ପରି ସେ ପୁଣି ବସିଲା, ବହି ଲେଉଟାଇଲା । ମାଷ୍ଟ୍ରେ ଆସିଲେ ଉଠିଲା, ବସିଲେ ବସିଲା, ଗଲେ ଛୁଡ଼ା ହେଲା ।

ଦିନଗୁଡ଼ାକ ତାର ଏମିତି କଟିବାକୁ ଲାଗିଲା । କଳ୍ପନାର ଧୂଆଁ ଆଉ କୁହୁଡ଼ି ଭିତରେ ତାର କୋମଳ ପ୍ରାଣଟା ଖାଲି ଖେଳ ବୁଲଲା । ସେ ଭାବେ କ'ଣ ହେଲା ତାର ? କ'ଣ ହେଲା ଏ ଛାତିର ? ମନ ଭିତରେ କ'ଣ ଆଉ ରହିଗଲା ?

ସେଇ ଦେହ ମନ ତ ଅଛି । ତା ହେଲେ ଛାତି ଭିତରେ ଏତେ ଛାଟି କାହିଁକି ?

ଫେରିଲା ଘରକୁ । ଟିଉସନ ମାଷ୍ଟ୍ରେ ଆସିଲେ, ପଢ଼ାପଢ଼ି କଥା ପଚାରିଲେ । ଅନ୍ୟମନସ୍କ ଭାବରେ ସେ କଣ୍ଠବର ଉତ୍ତର ଦିଏ । ତାର ଇଚ୍ଛା ସେ ଭୁବନ ବାବୁ ଆସନ୍ତେ ତାକୁ ପଢ଼ାଇ ଦେଇ ଯାଆନ୍ତେ ।

ତାପରେ······

ରାତି—ଜହ୍ନ ରାତି—ସୁନ୍ଦରୀ ଉପରେ ନ ହେଲେ ଛାତ ଉପରେ ଦୁଇଜଣଯାକ ବସି ଗପସପ କରନ୍ତେ—କୋଳରେ ମୁଣ୍ଡ ଥୋଇ ସେ ଶୋଇ ପଡ଼ନ୍ତା । ସୁଲୁ ସୁଲୁ ପବନ ଦେଉଥାନ୍ତା—ଝିଙ୍କିଭ ଡାକ ଶୁଭୁଥାନ୍ତା । କୋମଳତମ ହୃଦୟ ତାର-ହଠାତ୍ ସେ

କ'ଣ ଏକ ସ୍ୱପ୍ନ ଦେଖି ଚମକିପଡ଼ନ୍ତା···ଉଠି ଭୁବନର ବେକ ଧରି କହନ୍ତା, ପ୍ରିୟ···

ସେ ପଚାରନ୍ତେ, କଣ ହେଲା ?

କ'ଣ ଗୋଟାଏ ସ୍ୱପ୍ନ ଦେଖିଲି—

କ'ଣ ?

ତୁମେ ଆଉ ମୁଁ ଉଡ଼ି ଯାଉଚେ ଜହ୍ନରାଜ୍ୟରେ ଶୀତଳ ସିହ-ରଣରେ ଏଇ ଉଷ୍ଣ କୁ···ତାପରେ ମୁଁ ତମ ଦେହରେ କ୍ରମେ ଲୀନ ହୋଇ ଯାଉଛି···

ସେ କହନ୍ତେ ଏଗୁଡ଼ାକ କ ପାଗଳାମି ସୁଜାତା ? ତୁମେ ତ ମୋର ଦେହ ମନ ହୃଦୟ ଆଉ ପ୍ରାଣର ପ୍ରତି ରନ୍ଧ୍ରରେ ପୂରି ଯାଇଚ ଆଉ ଅବା କଣ ରହିଚି ମୋର ଅଦେୟ !

ଏତିକିରେ ସେ ମୁଗ୍ଧ ଦୃଷ୍ଟିରେ ତାଙ୍କର ମୁଖଆଡ଼େ ଚାହାନ୍ତା । ଚତୁର ପ୍ରିୟ ବନ୍ଧୁ ଶକୁନ୍ତୀ ତାର ହାତରେ ଟିକେ ମୃଦୁ ଉଦ୍‌ବେଳିତ କରି, ଦଅନ୍ତେ ସ୍ନିଗ୍ଧଶୀତଳ ଏକ ମୃଦୁଳ ଚୁମ୍ବନ··

* ଦଶ *

ଲାବୋରେଟରୀରେ ଏକାକୀ ବସି ଭୁବନ ତାର ଏକ୍‌ସପେରି-ମେଣ୍ଟ ଚଳାଇଛି । ଆନନ୍ଦ ନାହିଁ, ତଥାପି ଏକାଗ୍ରତା ରହିଚି ।

ଲାବୋରେଟରୀ···ପ୍ରକାଣ୍ଡ କାରଖାନା । ଭୁବନ ସ୍ଥିର ଦୃଷ୍ଟିରେ ଠିଆ ହୋଇଚି । କାଠର ଲମ୍ବା ଲମ୍ବା ର୍ୟାକ—ସଂଯୁକ୍ତ କରିଚି ମଝିରେ ଗୋଟାଏ ଦ୍ୱାର । ଦୋକାନର ସୋ' କେଶ୍ ପରି ବୁହତ୍ । ମଝିରେ ପ୍ୟାସେଜ—ବହିପତ୍ର ଖାତା ସବୁ ପ୍ୟାସେଜ ଉପରି ଓଡିଶିକାଠ ଉପରେ ରହିଚି ।

ଟେବୁଲଟା ଉପରେ ଭୁବନ ବସି ପଡ଼ିଲା । ଛୁଡ଼ା ହୋଇ ହୋଇ ଅଣ୍ଡା ଗର୍ଜି ମଡ଼ୁଛି । କାହାରିକି, କି କୁଆଡ଼କୁ ତାର ଲକ୍ଷ୍ୟ ନାହିଁ । ନତମସ୍ତକ ହୋଇ ସେ ଟେଷ୍ଟ ଟିଉବକୁ ଚାହିଁ ରହିଛି । ବାହାରୁ କେହି ଆସିଲା ପରି ଜଣାଗଲା । ପାସେଜ୍ ନିକଟରେ ଭୁବନ ବସିଛି । ଉଠି ପଡ଼ିଲା । ଅଣ୍ଡା ନଇଁ ସେ ପୁଣି ଟେଷ୍ଟ ଟିଉବକୁ ଧରିଲା । ଏତେ ଏକାଗ୍ରତା ସତ୍ତ୍ୱେ ତାର ମନେ ହେଲା, ଯେପରି ଜଣେ କେହି ବାହାରୁ ଆସୁଛି । ସେଇବାଟେ ହେଇ ଯିବ, ଅଥଚ ପାସେଜ୍ ଲକ୍ ଉପରେ ତାର ବନ୍ଧ ପନ୍ଥ ଶୂନ୍ୟ ହୋଇଛି ।

ଅନ୍ୟମନସ୍କ ଭାବରେ ସେ ତାର ବାଁ ହାତ ବଢ଼ାଇ ଦେଲା ବନ୍ଧପନ୍ଥକୁ ପାସେଜ ଉପରୁ ଅନ୍ୟତ୍ର ନେଇ ଥୋଇ ଦେବାକୁ, ହାତ ତାର ନଭୃତ କୋମଳ ଜନିଷଟିଏ ସ୍ପର୍ଶ କଲା । ସେ ବାଁ ହାତଟାକୁ ଆହୁରି ଷପ୍ପତର କରି ବନ୍ଧପନ୍ଥ ଭ୍ରମରେ ଲୀଳାର ଲୁଗା କାନିକୁ ଟାଣି ନେବାକୁ ବସିଲା···ଲୁଗାର ସ୍ପର୍ଶ ଅନୁଭବ କରି ଏକାଗ୍ର ଭୁବନ ଚାହିଁ ଦେଖିଲା, ସେ ଲୀଳାର···ଅର୍ଦ୍ଧ ଦେହର ନଭୃତ ଉପତ୍ୟକାରେ···

ତା'ର ଦେହଟା କ'ଣ ହୋଇଗଲା । ଗ୍ଲୁଭ ଧାଉଁ ଧାଉଁ ଉଠିଲା, ପଡ଼ିଲା । କ'ଣ ଭାବୁଥିବ ଲୀଳା···ସନ୍ଧ ଆଉ କେହି ଦେଖି ଥିବେ, ସିଭର୍ ଏକ୍ସପେରିମେଣ୍ଟ୍···ତାର ମୁହଁ ଲାଲ ପଡ଼ିଗଲା···

ଲୀଳା ନିଜ ହାତରେ ପାସେଜ ବନ୍ଦ କରି ଭୁବନ ପାଖରେ ଆସି ଠିଆ ହେଲା । ତାର ମନର ବିଶୃଙ୍ଖଳ ଆଶଙ୍କା ଜାଣିପାରି ସେ ସାନ୍ତ୍ୱନା ଦେଇ କହିଲା, Never mind ଭୁବନ ବାବୁ, ଆପଣଙ୍କ କାମ ଆପଣ କରନ୍ତୁ···

ଭୁବନ ଭାବିଲା, ଏ'ଟା ଲୀଳାର ଭୁଲୁଷା । ଯିଏ ଗୋଟାଏ ଗାର୍ଲ୍ ଷ୍ଟୁଡ଼େଣ୍ଟର ଅତି ନଭୃତ ଉପତ୍ୟକା ସ୍ପର୍ଶ କରିଛି—ଅବଶ୍ୟ ତାର ଅଜାଣତରେ, ତାକୁ କ'ଣ କ୍ଷମା ଅଛି ?

ବିସ୍ମିତ ଅପରାଧୀଟି ପରି ସେ ମିନତିଭରା କରୁଣ ଦୃଷ୍ଟିରେ ତାକୁ ଚାହିଁଲା । ନୀଳା କହିଲା, ଭୁବନ ବାବୁ, ମୋତେ କ'ଣ ମଣିଷ ବୋଲି ଭାବୁ ନାହାଁନ୍ତି ? ଅତେବ କହିଲି ପରା, ଏକ୍ସପେରି-ମେଣ୍ଟ କରିଯାନ୍ତୁ—ଆପଣଙ୍କର ବସ୍ତୁତ ଗୁଡ଼ାଏ ବାକି ରହିଛି । କ'ଣ ଭାବୁଛନ୍ତି ?

ଭୁବନ ନୀରବ ।

ନୀଳା କହିଲା, ଆପଣ କ'ଣ ଗୁଡ଼ାଏ ଭାବୁଛନ୍ତି । ମୁଁ ତ ନିଜେ କହୁଛି ଭାବୁନ, ଆପଣ ଏତେ ବ୍ୟସ୍ତ କାହିଁକି ? ମୋର ମାନ ସମ୍ମାନ କୌଣସି ମତେ କ୍ଷୁଣ୍ଣ ହୋଇନି ବରଂ ମୁଁ ଆସିବା ହେତୁ ଆପଣଙ୍କ କାମରେ ବ୍ୟାଘାତ ଜନ୍ମିଲା । ଆଚ୍ଛା, ମୁଁ ଯାଉଚି ।

ଚାଲିଯିବାକୁ ବସିଲା ନୀଳା । ଭୁବନର ଆଶଙ୍କାପ୍ରବଣ ଦୃଷ୍ଟି ଦେଖି ସେ ଭାବିଲା ଭୁବନବାବୁ ଡରୁଛନ୍ତି । ସେ ରହିଗଲା । କହିଲା, ଦୋଷ ମୋର ଭୁବନବାବୁ, ମୁଁ ପାସେଜ ଉପରୁ ବନ୍ଧ-ପଣକୁ ଅନ୍ୟ ବାଗକୁ ଠେଲି ଦେଇ ପଶି ଆସୁଥିଲି ଆପଣଙ୍କ ଅଜା-ଣତରେ । ଆପଣ ପାସେଜ ଉପରୁ ବନ୍ଧ କାଢିଦେଲେ ମୁଁ ଆସି ପାରିବି ବୋଲି ହାତ ବଢ଼ାଇ ଦେଉଥିଲେ । ମୁଁ ଦେଖିଚି, ଆପଣଙ୍କ ଦୃଷ୍ଟି ଥିଲା, ଟେଷ୍ଟ ଟିଉବ୍ ପାଖରେ । ଆପଣଙ୍କର କାମରେ ବ୍ୟାଘାତ ନ ଦେବା ପାଇଁ ମୁଁ ଯାହା କଲି, ଅନ୍ତତଃ ଭଦ୍ରତା ଖାତିରରେ ଆପଣ ଯାହା କରିବାକୁ ଗଲେ, ସେଟା କୌଣସି ମତେ ମୋତେ ଆଘାତ ଦେଇ ନାହିଁ । ଦେହଟା ଗରମ ଗରମ ବୋଧ ହେଉଚି ସତ, କିନ୍ତୁ କେବେ ଭାବନ୍ତୁ ନାହିଁ ଯେ ମୁଁ ଆକ୍ରୋଶ ରଖି ଆପଣଙ୍କ ନାଁରେ ପ୍ରିନ୍‌ସିପାଲଙ୍କୁ ରିପୋର୍ଟ କରିବି । ମୁଁ କ'ଣ ଏତେ ଦୂର ଅଭଦ୍ର ? ଆପଣ ଏପରି ବ୍ୟତିବ୍ୟସ୍ତ ଅଧୀର ହୋଇ ପଡ଼ିଲେ ନାଁ କ'ଣ ?

ଭୁବନର ଦେହଟା ଝାଳ ବୋହି ଆସିଲା । ସେ କେବଳ ଏତିକି ପଚାରିଲା, ମୋତେ ଭୁଲ ବୁଝି ନାହିଁ ତ ?

ନାଁ କଦାପି ନୁହେଁ । ଲୀଳା ଏତିକି କହି ଦେଖିଲା, ଭୁବନର ସନ୍ଦେହଟା ଦୂରପ୍ରାୟ ହୁଟି ପାରୁନ । ମନେ ମନେ କହିଲା, ଏତେ ମାଇଚିଆ ଏ ପୁରୁଷ ଜାତି···କ'ଣ ଟିକେ ସାମାନ୍ୟ ଘଟଣା ଘଟିଲା—ସେଥିରେ ଏତେ ବିଚଳିତ ହୋଇ ଉଠୁଛନ୍ତି । ପାଖକୁ ଲାଗିଯାଇ କହିଲା, ଏ ଏକ୍ସପେରିମେଣ୍ଟଟା କେମିତି କରୁଛନ୍ତି···

ଏତିକି କହି ସେ ଭୁବନର ମେଥଡ଼ଟା ଦେଖିନେଲା । କହିଲା, ଠିକ ଅଛି ତ ?

ତଥାପି ଭୁବନ ନୀରବ । ଭାବୁଥାଏ ଲୀଳା ତାର କ୍ଲାସମେଟ୍ —ଯଦି ଏ ଘଟନା ପଦାକୁ ଫିଟେ···

ପ୍ରଫେସର ମିଶ୍ରଙ୍କ ଆସିବାର ପାଦ ଶୁଣାଗଲା । ଲୀଳା କିଛି ଦୂର ଘୁଞ୍ଚିଗଲା । ଗଲାବେଳେ କହିଲା, ଭୁବନ ବାବୁ, ଦେଖନ୍ତୁ । ଏ ଘଟଣାଟା ଯେପରି ଆପଣ ଓ ମୋ ବ୍ୟତୀତ ଅପର କାହାରି କାନକୁ ନ ଯାଏ···

ଭୁବନ କହିଲା, ନାଁ ମୋତେ ଆଉ ଭୁଲ ବୁଝ ନାଁ···

ଧନ୍ୟବାଦ ।

ଲୀଳା ନିବାର ପରେ ପରେ ପ୍ରଫେସର ମିଶ୍ର ଆସି ପହଞ୍ଚିଗଲେ —ଭୁବନର ଛାତି ଉଠୁଛି, ପଡ଼ୁଛି—ବାବ୍‌ରେ ବାବ୍ ! ଏ କ'ଣ କମ୍ ଘଟଣା—କମ୍ ଆକ୍ସିଡ଼େଣ୍ଟଟିଏ···

ପ୍ରଫେସର ମିଶ୍ରଙ୍କ ପଛେ ପଛେ ଆଉ କେତେଜଣ ଛାତ୍ର ଛାତ୍ରୀ ଆସି ପହଞ୍ଚିଗଲେ । ପ୍ରଫେସର ମିଶ୍ରଙ୍କୁ ଦେଖି ଭୁବନ ନମସ୍କାର କଲା । ସେ ପଚାରିଲେ, କହୋ ତୁମର ଏକ୍ସପେରିମେଣ୍ଟ କେତେ ଦୂର ଗଲା ? ତୁମେ ଏତେ ପଛେଇଲେ ପାରିବ ତ ?

ଭୁବନ କିଛି କହିଲା ନାହିଁ । ଅଧ୍ୟାପକ ମିଶ୍ର କହିଲେ, ଡେରି କର ନାଁ, ଶୀଘ୍ର ଆଗେଇ ଚାଲ···ନ ହେଲେ ତୁମେହିଁ ବଡ଼ ବ୍ୟସ୍ତରେ ପଡ଼ିବ । ତମ ପାଇଁତ କିଛି ପ୍ରୋଗ୍ରେସ୍ ଅପେକ୍ଷା କରିବ ନାହିଁ—ଛାତ୍ର ଛାତ୍ରୀମାନେ ଯେଝା ଯେଝା ସ୍ଥାନରେ ବସିଲେ । ଭୁବନର ଅସ୍ଥିର ହୃଦୟ ଏପର୍ଯ୍ୟନ୍ତ ଦୋହଲୁଛି । ସେ ପୁଣି ଟେଷ୍ଟ ଟିଉବ୍‌କୁ ନିରୀକ୍ଷଣ କରି ଚାହିଁଲା । ଚାହିଁଛି···

ତାର ମନେ ପଡ଼ିଲା, ଏତେ ଏକ୍‌ସପେରିମେଣ୍ଟ ବାଣ୍ଟ ପଡ଼ିଗଲା କାହିଁକି ? ସୁଜାତା···

ହାତ ତାର କାମ କରୁଛି । ଆଖି ମାତ୍ର ଚାହିଁଛି । ମନରେ କିନ୍ତୁ ଡେଉଁ ଉଠୁଛି ସୁଜାତାର ଅଂଶରେ । ଏକାଗ୍ରତା ନାହିଁ । ତଥାପି ଏକ୍‌ସପେରିମେଣ୍ଟ ଚାଲିଛି । ଭୁବନ ଚାହିଁଛି—

ନିଆଁ ଜଳି ଉଠିଲା ତାର ଲୁଗାପଟାରେ, ପୋଡ଼ିଗଲା ସବୁ—

ପିଲାଏ ଚିତ୍‌କାର କରି ଉଠିଲେ, ପୋଡ଼ିଗଲା, ପୋଡ଼ିଗଲା, ଭୁବନ···

ବନ୍ଧୁମ ଦୌଡ଼ିଆସି ତାକୁ ଗଡ଼ାଇ ଦେଲା । ତଥାପି ଭୁବନର ଦେହ କିଛିକେ ସିଝିଗଲା । ସବୁଠାରୁ ବେଶୀ ଆଘାତ ଲାଗିଲା ତାର ବେକ ପାଖରେ । କଲରବୋନ ପାଖ ବିଲକୁଲ ସିଝିଗଲା ।

ଅଧ୍ୟାପକ ଦୌଡ଼ି ଆସିଲେ । କେତେ କେତେ ପିଲାଏ ମଧ୍ୟ ଲାବୋରେଟରୀକୁ ଚାଲି ଆସିଲେ । ଅଧ୍ୟାପକ ଭୁବନକୁ ଶୀଘ୍ର ଡାକ୍ତରଖାନା ପଠାଇବାର ବ୍ୟବସ୍ଥା କଲେ ।

କଲେଜ ସାରା ଗୋଟାଏ ଚହଳ ପଡ଼ିଗଲା । ଗାର୍ଲ୍ ଷ୍ଟୁଡେଣ୍ଟ ମାନେ କମନରୁମ ଛାଡ଼ି ଆସି ବାରଣ୍ଡାରେ ଠିଆ ହେଲେ । O.R.C. 1335ରେ ଭୁବନକୁ ମେଡ଼ିକାଲ ପଠାଗଲା ।

ଉଷା ଏ ଦୁର୍ଘଟଣା ପରେ ଅତ୍ୟନ୍ତ ବ୍ୟଥିତ ହୋଇ ପଡ଼ିଲା । ତା'ର ମନେ ହେଲା, ସେ ନିଜେ ହିଁ ଭୁବନର ଏ ବିପଦ ପାଇଁ ଦାୟୀ । କାହିଁକି ସେ ସେଠାକୁ ଯାଇଥିଲା ?

ଉଷାର ଆଖି ଛଳ ଛଳ ହୋଇ ଆସିଲା । ସେ ମନେ ମନେ କହିଲା, ସୁଜାତା···ତୋର ଭାଗ୍ୟରେ କ'ଣ ଅଛି କେଜାଣି ଭଗବାନ ଜାଣନ୍ତି । ମାତ୍ର ମୁଁ ଦେଖୁଛି, ତୋ'ର ପାଇଁ ଭୁବନ ବାବୁଙ୍କର ମନପ୍ରାଣ ଜଳପୋଡ଼ି ଯାଉଛି । ଆଜି ମଧ୍ୟ ଦେହଟା ବି ଜଳି ପୋଡ଼ିଗଲା—ଭଗବାନ···

## ❋ ଏଗାର ❋

ସୁଜାତା ମାଟ୍ରିକ୍ ଫାଷ୍ଟକ୍ଲାସକୁ ପ୍ରମୋଶନ ପାଇଛି । ସେଥି-ପାଇଁ ତାକୁ କେତେ ଯେ କଷ୍ଟ ସ୍ୱୀକାର କରିବାକୁ ପଡ଼ିଛି, ତା' ସେ ଜାଣେ । ଅନ୍ତରଙ୍ଗ ସଖୀ ଅଞ୍ଜଳି ତାର ପ୍ରମୋଶନ ପାଇଁ ଯଥାସାଧ୍ୟ ଚେଷ୍ଟା କରିଛି—ଏପରିକି ନିଜ ହାତରୁ ଟଙ୍କା ପଇସା କର୍ଜ ମଧ୍ୟ ।

ତେବେ ସୁଦ୍ଧା ସୁଜାତା ସୁଖୀ ହୋଇ ପାରିନାହିଁ । ଟିଉସନ ମାଷ୍ଟର ବହିଟା ପଢ଼ୁଥିଲା । ଦଶୋଟି ପୃଷ୍ଠା ପଢ଼ି ସାରି ଥୋଇଦେଲା । ପୁଣି, ପୁଣି ପଢ଼ିଲା, ଘଟଣାର ବୈଚିତ୍ର୍ୟ ଦେଖି ତା'ର ମନରେ ସନ୍ଦେହ ଜନ୍ମିଲା, ମନେ ପଡ଼ିଲା । ପୂର୍ବ ପରିଚିତ ବିନୋଦ··· ପ୍ରକୃତରେ ସେ ତା'ର ଅନ୍ତର ବୁଝିଥିଲେ ।

ଆଜି ଏ···କମିତିକା ସନ୍ଦେହ ଚକ୍ଷୁରେ ସୁଜାତା ତାଙ୍କୁ ବାରି ବାରି ଦେଖେ । ହେଲେ, ଭରସି କରି କହି ପାରେ ନାହିଁ । ସେ ତା'ର ଅନ୍ୟ ମନସ୍କଭାବକୁ ବରାବର ଲକ୍ଷ୍ୟ କରୁଥାନ୍ତି ।

ଆଜି ବାପା— ଟିଙ୍କଚର ର ତାଙ୍କର ବର୍ତ୍ତମାନ ତ୍ରାହାଣ ହାତ । ବ୍ୟବସାୟ ଫନ୍ଦ ଫିକର ।

ମଉଜ ମଜଲସ୍, ବୁଲବୁଲି—ସବୁଥିରେ ଯେପରି ଧରଣୀ-ବାବୁ ବାପାଙ୍କୁ ସାହାଯ୍ୟ କରୁଛନ୍ତି । ସୁଜାତାର ମନରେ ଆଶଙ୍କା ଜାତହୁଏ ।

ସେ ଫେରିବୁହେଁ ଅଶାନ୍ତକୁ । ଅଶାନ୍ତ ତା'କୁ ଶାନ୍ତି ଦେଇ ପାରେ ନା । ମନ ଭୁଲିଯାଏ ଭବିଷ୍ୟତର ସବୁଜ ସ୍ନିଗ୍ଧ ସ୍ୱପ୍ନରେ । ସେ ତା'ର ନିଜକୁ ହରାଇ ବସେ ।

ବନ୍ଧୁର ଚିଠି ଖଣ୍ଡିକ ପୁଣିଥରେ ପଢ଼ିବାକୁ ଇଚ୍ଛା ହେଲା । ତା'ର ପାଠପଢ଼ା ସବୁ ସାରିଚି, ଘରେ ଅଛି । ସହରର ଜଳବାୟୁଠାରୁ ସେ ବହୁତ ଦୂରରେ – ତଥାପି ମନର ଭାଷା ଲେଖିଛି । ସୁଜାତା ପଢ଼ିବାକୁ ଆରମ୍ଭ କଲା । ବନ୍ଧୁ ଲେଖିଛି—

ଅପା,

ମୋର ନମସ୍କାର ଗ୍ରହଣ କରିବ, ତମର ଚିଠି ପାଇଲି । ଘଟଣାଟା ପ୍ରକୃତ ଜାଣିବା ପାଇଁ ଚେଷ୍ଟା କଲି । ସମୟ ଲାଗିଲା । ଉତ୍ତର ଦେବାରେ ଡେରି ହେଲା । କ୍ଷମା ଦେବ ।

ତମକୁ କେବେ ନୂଆବୋଉ ବୋଲି ଡାକିବି ସୁଜାତା ଅପା ? ଭଗବାନ ଜାଣନ୍ତି, ମୁଁ ତ ବରାବର ଲାଗିଚି । ତମକୁ ତ ବହୁତ ଥର ଲେଖିଲିଣି, ସେଇକଥା । ଭାଇଙ୍କର ଏକା ଭାରି ମନ ଅଛି । ତମେ ଖାଲି ବରାବର ଲେଖୁଚ, ମୁଁ କିମିତି ଜାଣିଲି ? ଆଚ୍ଛା ଅପା, ମୁଁ କ'ଣ ଭାଇଙ୍କୁ ଯାଇ ନିଜେ ମୁହାଁମୁହିଁ ପଚାରନ୍ତି, ଭାଇ, ସୁଜାତା-ଙ୍କର ଭାରି ଇଚ୍ଛା ତମକୁ ବାହା ହେବା ପାଇଁ; ନାଁ କହିଥାନ୍ତି, ସୁଜତାଙ୍କର ଭାରି ମନ ମୋ ମୁହଁରୁ ନୂଆବୋଉ ଡାକ ଶୁଣିବାକୁ । ଏ କଥା କଣ ଭାଇଙ୍କ ଆଗରେ କହିହୁଏ । ତମେ ତ ବରାବର

ଲେଖୁଚ, ବନ୍ଧୁ, ମୋ ପାଇଁ ତମେ ତମ ଭାଇଙ୍କି ସବୁ କଥା ପଚାର ବଶ । ମୁଁ ତ ଯତ୍ନ କରୁଚ । କହିଲି ପରା, ଭାଇଙ୍କର ଭାରି ମନ ଅଛି । ଆଜ୍ ଏ ବାହାଘରଟା ହୁଅନ୍ତା 'Love marriage' ତମ ଦୁହିଁଙ୍କ ଭିତରେ ଭିତରେ ତ ସନାତନ ପ୍ରୀତି Love.

ବାପାଙ୍କ କଥା ? ତମ ଘରୁ କିଏ ସବୁ ଆସିଥିଲେ, କଥା ପଡ଼ିଲା । ବାପା ଜିଦ ଧରି ବସିଛନ୍ତି, ଭାଇ ଜଣେ ଇଞ୍ଜିନିଅର ହେବେ । ଟଙ୍କା ଯାହା ଖର୍ଚ୍ଚ ହେବ, ତା'ପାଇଁ ତାଙ୍କର ପରୁଆ ନାହିଁ । ବରଂ ଜମିବାଡ଼ି ବନ୍ଧା ରଖି ତାଙ୍କୁ ପଢ଼ାଇବେ । ଆଉ ଆମ ସାନ ଭାଇ ହେବେ ଡାକ୍ତର । ତାଙ୍କୁ କୁଆଡ଼େ ଭାଇ ପଢ଼ାଇବେ ।

ସତ କହୁଚ ଅପା, ବାପାଙ୍କର ଆଦୌ ଇଚ୍ଛା ନାହିଁ— ଭାଇଙ୍କୁ ବର୍ତ୍ତମାନ ବାହା ହେବାକୁ । ବୋଉର ମନ ଅଛି, ହେଲେ ସୁଝା, ବାପାଙ୍କ ନାଲି ଆଖି ଦେଖିଲେ ବୋଉ ତ ପିମ୍ପୁଡ଼ି ଗାତ ଖୋଜେ ଲୁଚିବାକୁ । ବାପା କ'ଣ ଖରାପ କହୁଛନ୍ତି ? ଭାଇ ଇଞ୍ଜିନିଅରିଂ ପାସ କରି ଆସିବେ, ବାହା ସା' ହେବେ, ଘର ସଂସାର କରି ରହିବେ । ମଝିରେ ଏ ସବୁ ଗଣ୍ଡଗୋଳ ହେଲେ ତାଙ୍କର ପଢ଼ାରେ କ୍ଷତି ହେବ । ଆମର ନରେନ୍ଦ୍ର ଭାଇ ତ ବି. ଏ. ପରୀକ୍ଷାରେ ଆଉ ପାସ କରି ପାରିଲେ ନାହିଁ । ଖାଲି ଭାଉଜଙ୍କୁ ଧରି ବୁଲିଲେ ଏଣେ ତେଣେ । ବାପା ସେଇ ଉପରେ ମନା କରିଦେଲେ । ଆପଣଙ୍କ ଲୋକେ ଗୁଲିଗଲେ ।

ଗଲା ପରେ ବାପା ଓ ଜେଜେବାପାଙ୍କ ( ବାପାଙ୍କ ବାପା ) ମଧ୍ୟରେ ବହୁତ ଆଲୋଚନା ଲାଗିଲା । ଆଲୋଚନା ହେଲା ଜାତି ଗୋତ୍ର କଥା । ବାପା କହିଲେ ଆଗେମ କୁଆଡ଼େ ଶାଖଣ୍ଡାୟୁଡ଼ । ଜେଜେ କହିଲେ, ଏ ଯୁଗରେ ସେ ସବୁର ଧରାବନ୍ଧା ନିୟମ ନାହିଁ । ଯା'ର ଟଙ୍କା ପଇସା ହେଲା, ସେ ହେଲା ବଡ଼ ଲୋକ, ଧନୀ, ମାନ୍ୟ

ଆଉ ସମ୍ଭ୍ରାନ୍ତ । ଶ୍ରୀଖଣ୍ଡାପୁର ଭିତରେ ମଧ୍ୟ ଶ୍ରେଷ୍ଠ ହୋଇ ଗାଁଆରେ ପଡ଼ୁଛନ୍ତି । ଜେଜେ କହୁଥିଲେ, ସେଠି ବାହାଘର କରି ପକା । ଲୋକଟା ବଡ଼ କଣ୍ଟ୍ରାକ୍ଟର, ବହୁତ ପଇସାବାଲା । ହୁଏତ ଭୁବନକୁ ବିଲାତ ପଠାଇବା ପାଇଁ ସାହାଯ୍ୟ ଦେବ ।

ବାପା ତ କିନ୍ତୁ ରାଜି ହେଉ ନାହାନ୍ତି । ଜମିବାଡ଼ି ବନ୍ଧକ କରି ବରଂ ସେ ଭାଇଙ୍କୁ ପଢ଼ାଇବେ, କାହାରି ସାହାଯ୍ୟ ନେବେ ନାହିଁ ବୋଲି ଜିଦ୍ ଧରି ବସିଛନ୍ତି । ବେଳେବେଳେ ବୋଉ ଓ ବାପାଙ୍କ ଭିତରେ କ'ଣ ଟୁପୁରୁଟାପ କଥାବାର୍ତ୍ତା ଚାଲେ । ବୋଧହୁଏ ମୋର ବିବାହ ବିଷୟ ନେଇ । ବୋଉ ବହୁତ ଥର କହିବାର ଶୁଣିଲିଣି, ଗୋଟିଏ ନୂଆ ବୋହୂ ଏ ଘରକୁ ନ ଆଣିବା ଯାଏ ମୁଁ ମୋ ବନ୍ଧୁକୁ ପାଖରୁ ଛାଡ଼ିବି ନାହିଁ । ତୁମେ ଆସନ୍ତ କି ଭାରି ଭଲ ହୁଅନ୍ତା !

ଅଚ୍ଛା, ମତେ ଭୁଲିବନି, ଚିଠି ଦେବ । ଇତି

ସ୍ନେହର
ବନ୍ଧୁ,

ଚିଠିଟି ଥୋଇଦେଲା ସୁଜାତା । ଛାତିର ପିଞ୍ଜରା ଭେଦ କରି ଦୀର୍ଘଶ୍ୱାସଟିଏ ବାହାରି ଆସିଲା । ତାଙ୍କୁ ଜଣାଗଲା, ମୁଣ୍ଡ ଉପରେ ହିମାଳୟ ପର୍ବତଟା ଯେପରି ଥୁଆ ହୋଇଛି ।

× × ×

କିଛି ସମୟ ପରେ ତା'ର ମା' ଆସିଲେ । ସୁଜାତା ଶୋଇଛି । ଡାକିଲେ । ସେ ଜବାବ ଦେଲା । କହିଲେ ଭୁବନବାବୁ ଆସିଛନ୍ତି ।

ଚମକି ଉଠିଲା ସୁଜାତା । କାହାନ୍ତି ବୋଲି ସେ ଛଡ଼ି ଗୁଡ଼ାକ ଏଣୁ ତେଣୁ ଧରି ଚଉକିଆ ତଳେ ଥୋଇଦେଲା । ମା' ଚାଲିଗଲେ । ରୁମ ଭିତରକୁ ଆସିଲା ଭୁବନ । ସୁଜାତା ଛାତି ଧଡ଼ପଡ଼ ହେଲା । ଦେହ ଥରିଲା । ଚିନ୍ତା ଶକ୍ତି ନିଶ୍ଚେଷ୍ଟ ରହିଲା । ସେ କିଛି କହି ପାରିଲା ନାହିଁ । ଓଠଯୋଡ଼ା ଖାଲି ଲୁହ ଥର ଥର

ଭୁବନ ସ୍ମିତ ଦୃଷ୍ଟିରେ ପଚାରିଲା, 'କ'ଣ କଥା କ'ଣ ? ସୁଜାତାର ଚେତା ଫେରିଲା । ବୁଦ୍ଧି ଖୋଲିଲା । ସେ କହିଲା, କିଛି ନାହିଁ—ଓଃ ଆପଣ—ନମସ୍କାର, ବସନ୍ତୁ ।

ଏପରି ଭାବ ଭୁବନ କେବେ ଦେଖିନାହିଁ । ସେ ମନେ ମନେ ଶଙ୍କିତ ହୋଇ ତାକୁ ଚାହିଁଲା । ପ୍ରତିଫଳିତ ଆଶଙ୍କା ଦେଖି ସୁଜାତା ମଧ୍ୟ ତାକୁ ଚାହିଁଲା ।

ନୀରବ ।

ତା'ପରେ ଭୁବନ ପଚାରିଲା, ତୁମେ ଏପରି ବ୍ୟସ୍ତ ଓ ଦୁଃଖିତ ଦେଖାଯାଉଛ କାହିଁକି ସୁଜାତା ?

ନାଁ, ମୁଁ ଖୁବ୍ ଭଲ ଅଛି ତ—ଏଇ ଗରମ ପଡ଼ୁଛି ବେଶୀ ନାଁ···ଆପଣ ବସନ୍ତୁ ।

ଭୁବନ ବସି ପଡ଼ିଲା । ଗୋଟା ଗିଲାସେ ସରବତ ଆଣି ଥୋଇ ଦେଲା ଟେବୁଲରେ ।

ଆପଣ ବଡ଼ ଶ୍ରାନ୍ତ କ୍ଲାନ୍ତ ଦେଖା ଯାଉଛନ୍ତି—ଟିକେ ସରବତ ଖାଇ ନିଅନ୍ତୁ···

ଗିଲାସଟି ହାତରେ ଧରି ସୁଜାତା ଭୁବନର ମୁହଁ ଆଡ଼କୁ ଧରିଲା । ଭୁବନ ତା'ର ହାତଟିକୁ ଧରି ପକାଇଲା । କହିଲା, ଥାଉ···

ଥିବ କାହିଁକି···ଆପଣ···

ଆଉ ତୁମେ···

ଭୁବନ ଏଥର କହି ରାମାକୁ ଡାକଲା । ରାମା ଆସିଲା—
ସୁଜାତା ହାତରେ ସରବତ ଗିଲାସ । ଭୁବନ କହିଲା, ରାମା ଆଉ
ଗୋଟା ଗିଲାସ ଆଣ ତ ?

ସୁଜାତା କହିଲା, ରାମା—ଦରକାର ନାହିଁ···

ବଡ଼ ଅଥୟ କଲା ଭୁବନ । ରାମା ଆଉ ଏକ ଗ୍ଲାସ ସରବତ
ଆଣି ଦେଲା । ଭୁବନ ପଚାରିଲା, ସରବତ କ'ଣ ତୁମ ଘରେ
ତିଆରି କର ।

ହଁ ବାବୁ, ବରଫ ତ ଆସେ—ଆଉ ସବୁ ତ ଘରେ ଅଛି—

ଖଣ୍ଡେ ସାଦା ବରଫ ଆଣ ତ ?

ରାମା ଚାଲିଗଲା ।

ସରବତ ଗିଲାସକ ଭୁବନ ମୁଠିରେ ଧରାଇ ଦେଲା ସୁଜାତା,
ଭୁବନ ଟିକେ ପିଇ ଥୋଇ ଦେଲା । କହିଲା—ଏତେ ମିଠା···
ଏଣିକି ତୁମେ ଖାଅ ?

ସୁଜାତା ଆସ୍ୱାଦିତ ଗିଲାସଟି ହାତରେ ଧରିଲା ।

ଭୁବନ ପଚାରିଲା, ଏ କ'ଣ—

ସେ—

ସେ ବୋଲି କହି ସୁଜାତା ଦୁଇଢୋକ ପିଇଦେଲା ।
କହିଲା, ଏଣିକି ଆପଣ ନଅନ୍ତୁ···

କ'ଣ କ'ଣ ଭାବି ଧୀରେ ଧୀରେ ସରବତ ଗିଲାସକ
ଶେଷ କରିବାକୁ ଲାଗିଲା । ଗିଲାସ ଅଧାଅଧି ହେଲାଣି । ପଚାରିଲା,
ସୁଜାତା···ନାଲି ଗିଲାସର ତମ ଘରେ ଖୁବ ବେଶୀ—

ମାନେ—

ମାନେ ବୁଝି ପାରୁନାହଁ ?

ହଁ, ବୁଝିଲି । ବାପାଙ୍କ ଡ୍ରିଙ୍କ୍ କରିବା କଥା ତ ? ବୋଉ ତ
ଡରିହରି ଅଛି ।

ନାଁ, ସେଇକଥା । ମୋତେ ଏ ସବୁ ଏତେଟା ଭଲ ଲାଗେ ନାଁ । ତୁମେ ମନେ ରଖିଥିବ, ସେଦିନ ମୁଁ ଆସି ପଣା ଖେଳୁଥିଲି । ପରେ ଡାକ୍ତରବାବୁ, ତାଙ୍କ ସ୍ୱାମୀଙ୍କର ଓ ଅନ୍ୟାନ୍ୟମାନେ ଆସି ପହଞ୍ଚିଲେ । ସେମାନଙ୍କୁ ମୋର ଉପସ୍ଥିତି ବୋଧହୁଏ ଅସହ୍ୟ ବୋଧ ହେଉଥିଲା । ମୁଁ ସେମାନଙ୍କର ବ୍ୟବହାର ଓ ଦୃଷ୍ଟିଭଙ୍ଗୀରୁ ଠଉରାଇ ନେଇଥିଲି । ପରେ ତ ଚାଲି ଆସିଲି । ଭଲଲୋକ ନୁହଁନ୍ତି ସେମାନେ ।

କଥା କହୁଥାଏ—ଲୋକେ ପିଉଥାଏ । ସରବତ ଗିଲାସକ ସରି ଆସିଲା ।

—ଭାରି ଗରମ ଲାଗୁଚି—କହି ଭୁବନ ତା'ର ପଞ୍ଜାବୀଟା ଖୋଲିଦେଲା । ନବଯୁବତ ଦେହଟି ତା'ର । ତମ୍ବା ତାରପରି ଉଜ୍ଜ୍ୱଳ ବେକ । ବେକ ପାଖରେ ସିଝା ଦାଗ ।

ସୁଜାତା ବ୍ୟସ୍ତ ହେଉଥିଲା । ପଚାରିଲା, ଏ କ'ଣ ?

ଲାବୋରେଟୋରୀରେ ଏସିଡ୍ ପଡ଼ି ପୋଡ଼ି ଯାଇଥିଲା—

ଓଃ, ଉଷା କହୁଥିଲା—ଭଗବାନ୍, ଏ ଦୁର୍ଘଟଣା କାହିଁକି ଘଟିଲା ? କ'ଣ ସିଝିଗଲା ?

ହୁଁ ଏ ଉପର ଚମଡ଼ାଟା ସିଝିଗଲା କିନ୍ତୁ ସୁଜାତା—

ଶଙ୍କାପ୍ରବଣ ଭୁବନର ଦୃଷ୍ଟି । ଗଦ୍ ଗଦ୍ ତା'ର ଭାଷା । ସୁଜାତା ଥରି ଉଠିଲା । ପଚାରିଲା—

କିନ୍ତୁ କଣ ?

ଭିତରଟା ସେ ଜଳପୋଡ଼ି ସିଝି ଯାଉଚି—

ସୁଜାତା ଶୁଣିଲା । ମନର କୋହ ମନ ଭିତରେ ଚାପି ଧରି କହିଲା । ଆପଣ କାହିଁକି ନିଜକୁ ଜାଳିପୋଡ଼ି ମାରୁଛନ୍ତି, ଭୁଲି ଯାଆନ୍ତୁ ସବୁ—

ଭୁବନ କିଛି ଭଲ୍ପ ପାରିଲା ନାହିଁ ।

ସୁଜାତା ପାଖରେ ବସି ପଡ଼ିଲା । ପଙ୍ଖା କରୁ କରୁ ପଚାରିଲା, କାହିଁକି ଏ ସବୁ ଆଉ ମନ ମଧ୍ୟରେ ଥାନ ଦେଉଛନ୍ତି—

ତୁମେ ମୋତେ ଭୁଲ ବୁଝିବାକୁ ଚେଷ୍ଟା କର ନାହିଁ । ଭୁଲିବାକୁ ମୁଁ ଯାଉନାହିଁ ନା—ତୁମର ସେ ବିଷୟରେ ଚିନ୍ତିତ ହେବା ଉଚିତ ନୁହେଁ । ମୁଁ ଜାଣେ ତୁମେ ଖୁବ୍ ବିଚଳିତ ହେଉଛ । କିନ୍ତୁ ମନେ ରଖ । ପୃଥିବୀର ପ୍ରଳୟ ହେଲେ ସୁଦ୍ଧା ମୁଁ ତୁମକୁ ଛାଡ଼ିପାରିବି ନାହିଁ; ଆଜି ବାପାଙ୍କୁ ସ୍ପଷ୍ଟ ଜଣାଇ ଦେଇଚି, ବିବାହ କରିବାର କଥା ହେଲେ ମୁଁ ସୁଜାତା ବ୍ୟତୀତ ଅନ୍ୟ କାହାକୁ ବିବାହ କରି ପାରିବି ନାହିଁ···

ଘୁଞ୍ଚିଗଲୁ ଭୁବନ ବାବୁ···କାହିଁକି ଆଜି ?

ନା ସୁଜାତା-ବାପା ଆଜ ଭୁଲ୍ ବୁଝୁଛନ୍ତି । କାଲି ତାଙ୍କର ମନର ପରିବର୍ତ୍ତନ ଆସିବ । ସେ ଦେଖିବେ, ଭୁବନ ଯାହା କରୁଛି, ତା' ଠିକ୍ । ତୁମେ ବ୍ୟସ୍ତ ହୁଅ ନାହିଁ । ମୁଁ ଚେଷ୍ଟା କରୁଛି । ଆଶ୍ୱସ୍ତ ହୁଅ ।

ଅଶ୍ୱାସନା ଶୁଣି ସୁଜାତାର ହସ ରେଖା ଫୁଟି ଉଠିଲା । ସେ କହିଲା, ମୁଁ କହିଥିଲି କାଲି ଆସିବାକୁ—ଆସିଲେ ନି ?

ଅଭିମାନ ମିଶା ତା'ର ଭାଷା ।

ଭୁବନ କହିଲା—ଅସୁବିଧା ଥିଲା । ଆଚ୍ଛା, ବୁନୁ ହେଉଛନ୍ତି କାହାନ୍ତି ?

ସବୁ ଶୋଇ ପଡ଼ିଛନ୍ତି ।

ଆଉ ମାଉସୀ ?

ଥିବେ···

ଭୁବନ ଉଠି ପଡ଼ିଲା । ଚାଲି ଚାଲି ହୋଇ ଦେଖେ ତ ମାଉସୀ ବସିଛନ୍ତି । କ'ଣ ଗୋଟାଏ ଅଖାଡ଼ୁଆ ଚିନ୍ତା କରିବା ଭଳି ତା'ଙ୍କ ମୁହଁଟା ଅପ୍ରସନ୍ନ ଦିଶୁଛି । ଭୁବନ କହିଲା, ଯାଉଚି ମାଉସି··· ତାଙ୍କର ଚିନ୍ତା ଭାଙ୍ଗିଲା । ସେ କହିଲେ, ହଉ ଯିବ ତ ! ଟିକେ ରୁହ, ହେ ରାମା···କୁଆଡ଼େ ଗଲୁ ମ ଏତେବେଳ ଯାଏ ।

ଭୁବନର ଆଖି ଦୁଇଟା ଛଳ ଛଳ ହୋଇ ଆସିଲା କେଜାଣି କାହିଁକି, ସେ ଜାଣି ପାରିଲା ନାହିଁ, କହିଲା, ନାଁ···ମୁଁ ଯାଉଚି ।

କେବେ ଆସିବ ?

ଆସିବି ମଝିରେ ମଝିରେ ।

ଭୁବନ ନମସ୍କାର ଜଣାଇ ବିଦାୟ ଆଣିଲା । ସୁଜାତା କହିଲା —ବୋଉ କ'ଣ କହିଲେ ?

କିଛି ନାହିଁ, ଅଟକାଉଥିଲେ ତ—

ତା' ପରେ ଭୁବନ ଚାଲି ଆସିଲା । ପଛରେ ସୁଜାତା । ଫାଟକ ପାଖରେ ଯୁଝୁ ଦେଇ ସୁଜାତା ଠିଆ ହେଲା । ଆଖିରେ ଲୁହ ଆସୁ ନାହିଁ । ତଥାପି ମନରେ ଅସୀମ ଦୁଃଖ । ଭୁବନ ପଚାରିଲା, ଯାଉଚି, ବ୍ୟସ୍ତ ହୁଅନି···ସାଇକେଲ୍ ଧରି ସେ ଚାଲିଗଲେ ।

ସୁଜାତା ସେଇଠି ଠିଆ ହୋଇ ରହିଲା । ସାଇକେଲଟା କିଛି ବାଟ ଯାଏ ଦେଖାଗଲା । ତା' ପରେ ଛକ ମୋଡ଼ ଆଉ ଦିଶିଲା ନାହିଁ । ହୃଦୟରେ ଆଶା ଆଶ୍ୱାସନା ଓ ଦୁଃଖ ଆସନ୍ନ ଝଡ଼ ଉଠିବାର ସୂଚନା । ସେ ମନେ ମନେ କହିଲା ଭୁବନର ସେଇ କବିତାଟି···

ପ୍ରଣୟର କଳ୍ପବଟ ଏଇ ମୋ ଜୀବନ
ପ୍ରାଣର ଆକୁଳ ଆଶା
ଓଠର ବ୍ୟାକୁଳ ଭାଷା
ବିରହ ମିଳନ ଅଶ୍ରୁ ସବୁ ସଞ୍ଜୀବନ
ପ୍ରଣୟର କଳ୍ପବଟ ଏଇ ମୋ ଜୀବନ—

ଭାବିଲା ଅଞ୍ଜଳି ପାଖକୁ ଚିଠି ଲେଖିବ । ଜାଣିବ ? ଜାଣିକି ସେ ପୁଣି ତାକୁ ତାର ଦୁଃଖମାନଙ୍କ ଜଣାଇବ ? ନା···ଫେରି ପଡ଼ିଲା । ସୀମା ପଚାରିଲା, ବାବୁ କ'ଣ ବୁଝାଉଲେ ?

ସୁଜାତା ନୀରବରେ ତାର ଉତ୍ତର ଦେଲା ।

## ✽ ଚାରି ✽

ଭୁବନର ଏହା ଫୋର୍ଥ ଇୟର । ପିଲାଏ କହନ୍ତି :

First year Damn care
Second year Labour
Third year Marriage
O 4th year, sleepless Graduate father !

ବାସ୍ତବିକ ଭୁବନର ଅବସ୍ଥା ସେଇଆରି । କଲେଜ ଖୋଲିଲାଣି । ବାସୁ ଆଇ. ଏସ୍. ସି. ପରେ ବି. ଏ.ରେ ନାମ ଲେଖାଇଛି । ଗରିବ ପିଲା । ଟିଉସନ ଯୋଗାଡ଼ ପାଇଁ ଲାଗିଛି । ଭୁବନ ପାଖରେ ଆସି ଦିନେ ପଢ଼ୁଥିଲା । ଦେଖିଲା, ଭୁବନ କଳାକାଠ ପଡ଼ି ଯାଉଛି ।

ବାସୁକୁ ଦେଖିଲା ମାତ୍ରେ ଭୁବନର ଆଖି ଲୁହ ଛଳ ଛଳ ହୋଇ ଆସିଲା । ଅବସ୍ଥା କ'ଣ ବୁଝିବାକୁ ବାସୁକୁ ବେଶି ସମୟ ଲାଗିଲା ନାହିଁ । ନୀରବ ସେ, ଖାଲି ଏତିକି କହିଲା, ଧୈର୍ଯ୍ୟ ଧର, ଯାହା ହେବାର ହେଉଛି । ଆଉ ଗୁଡ଼ାଏ ନିଜକୁ ଜଳାଇ ପୋଡ଼ାଇ ମାରିବାକୁ ଦେ ନାଁ । । ଆଚ୍ଛା କହିଲୁ, ସୁଜାତା କେମିତି ?

ହୁଁ ସେମିତି ଥିବ, ଭୁବନର କଣ୍ଠରେ ଦୁଃଖ ଓ ସମବ୍ୟଥାର ପ୍ରତିଧ୍ୱନି ।

ଏଇ କଥାଟି—ବାପୁ ହସି ହସି ପଚାରିଲା ।

ଭୁବନ ଗମ୍ଭୀର ରହିଲା । ସମୁଦାୟ ରହସ୍ୟ ଭେଦ କରିବାକୁ ବାପୁ ହଠାତ୍ ଚେଷ୍ଟା କଲା ନାହିଁ । ଏତିକି ଜାଣିଲା ଯେ କିଛି ନା କିଛି ଘଟି ଯାଇଛି ।

କହିଲା, ମୁଁ କହୁଛି ପରା, ପ୍ରେମ, ପ୍ରଣୟ, ଆଦର୍ଶ,ଏଗୁଡ଼ାକ ବାଜେକଥା । ମଣିଷର ମୁଣ୍ଡ ଖରାପ କରିବାର ଗୋଟିଏ ଗୋଟିଏ ପଥାପଥ ଜଟିଳ ମୀମାଂସା । ତୁ ସେ ବାଜେ କଥା ଛାଡ଼ । ପାଠ ପଢ଼ । ମୂଲ୍ୟବାନ ସମୟ ଗୁଡ଼ାକ ନଷ୍ଟକରି ବାଜେ ଚିନ୍ତା କର ନାଁ ।।

ତୁମେ କେବେ ଲଭ୍ କରିନା ବାପୁ—ଜାଣିଥିଲେ ବୋଧହୁଏ···

କିଏ କହିଲା ମୁଁ ଲଭ ଜାଣେନି ? ଫରକ ଏତିକି ଯେ ତୁ ଆଦର୍ଶ କହୁ ତା ପଛରେ ଦଉଡ଼ ଦଉଡ଼ ପ୍ରାଣାନ୍ତକ ହେଲୁଣି । ମୁଁ କିନ୍ତୁ ନୀରବ ନିଶ୍ଚଳ । ତୋତେ ତ କହିନି ଭୁବନ, ଗଲା ଗ୍ରୀଷ୍ମଛୁଟିରେ ଯାହାହା ଘଟିଗଲା···

ଆଗ୍ରହରେ ଭୁବନ ପଚାରିଲା, କଣ ଘଟିଲା—

ଘଟିଲା, ଯାହା ଘଟିବାର ନୁହେଁ—

କ'ଣ କହୁନ୍—

କ'ଣ କହିବି ରେ । କହିଲାବେଳକୁ ତ ପ୍ରେମ ଠାକୁର ଉତ୍ପତ୍ତି—ତୁ ଯେବେ ସେପରି ପରିସ୍ଥିତିରେ ପଡ଼ିଥାନ୍ତୁ···

କ'ଣ ଏତେ ଭୂମିକା କରୁଛୁ, କହ ନାଁ ।

ଗ୍ରୀଷ୍ମ ଛୁଟିଟା ଲମ୍ବା ଜଣାଗଲା । ପରୀକ୍ଷା ଫଳ ବାହାରି ନ ଥାଏ । ଏଣେ ମନ ବ୍ୟସ୍ତ । ଜାଣିଥିବୁ, ଏଣୁତେଣୁ ଗୋଟା ଗୋଟି କରି ଖଣ୍ଡେ 'ମାଟିର ଘର' ତିଆରି କରିଦେଲି । ଘର ପ୍ରତିଷ୍ଠା ସରିଲା ଦିନ 'ମାଟିର ଘର' ଫିଲ୍ମଟାର ସଙ୍ଗୀତଟା ମନେ ପଡ଼ିଲା ।

ନୀଲ ସାଗରେର ମରଣ ଦୋଲାୟ ଯେଥାୟ ଖେଳେ ବାଲୁଚର
ତାର ବୁକେ ମାଝିର ମାନୁଷ ଆଶାୟ ବାନ୍ଧେ ମାଝିର ଘର ।

ମନ ଦୌଡ଼ିଲା ସମୁଦ୍ର କୂଳକୁ । ଚାଲିଲି । ଜାଣିଥିବୁ, ସାଗରିକା ହୋଟେଲ ମେନେଜର ସେଦିନ ଆମକୁ କହିଥିଲେ ଆଉ ଥରେ ଆସିବାକୁ । ଯାଇଁ ପହଞ୍ଚିଲି । ସେଇଦିନ ଜଣେ ଭଦ୍ରଲୋକ ତାଙ୍କର କନ୍ୟାସହ ସେ ହୋଟେଲରେ ପହଞ୍ଚିଲେ । ମୁଁ ଶ୍ରେଷ୍ଠ ବଖରାଟି ନେଲି ଉପରେ । ମୋ ପାଖାପାଖି ବଖରାଟି ସେ ନେଲେ । ବୁଲି ବୁଲି କରି ଆସେ ପହଞ୍ଚିଲି । ମେନେଜର ଓ ତାଙ୍କ ବନ୍ଧୁମାନେ ଆସିଲେ । ତାସ ଖେଳ ହେଲା । ଶୋଇଲି ପ୍ରାୟ ୨ଟାରେ । ନିଦ ଲାଗିଗଲା—ଚାହିଁ ଆରଦିନ ସକାଳୁ ଉଠି ଶୁଣିଲି ବଙ୍ଗଳା ବଙ୍ଗଳା କଥା । କୁଆଡେ଼ ଗଲେକି ! ବସି ରହିଲି ।

ତୁ ତ ଟାକ ବସିଥିବୁ···

ନାଁ । ଭୁବନ । ତୀର୍ଥଯାତ୍ରୀ ସେମାନେ । ଆସିଥିଲେ । ମୁଁ ବି ଯାଇଥିଲି । ଜାଣିପାରିଲି । ଭଦ୍ରଲୋକଙ୍କୁ ଜର । ଝିଅଟି ବିବ୍ରସ୍ତ ବଡ଼ ବ୍ୟସ୍ତଥାଏ । କାହାକୁ କହିବ କିଏ ଅବା ଡାକ୍ତର ଡାକିବ ? ମେନେଜରଙ୍କୁ ଖବର ଦେଲା । ସେ ବ୍ୟସ୍ତ ଥିଲେ ବୋଲି କହିଲେ । ତା'ପରେ ଚାକରଟା ଆସିଲା ତାଙ୍କୁ ଜଳଖିଆ ଦେବାକୁ । ମୁଁ ସବୁ ଦେଖୁଥାଏ ! ଶୁଣୁଥାଏ ! କିଛି କହୁ ନ ଥାଏ । ପରେ ବାହାରିଲି ବୁଲି । ଘର ଭିତରକୁ ଚାହିଁ ଦେଲି । ଚାକରଟା ସେଇ ମୁହୂର୍ତ୍ତରେ ଆସି ମୋତେ ଅଟକାଇ କହିଲା, ବାବୁ, ତମକୁ ଡାକୁଛନ୍ତି । ତା ପାଟିରୁ ଏକଥା ସରୁ ନ ସରୁଣୁ ସେ ଗାର୍ଲଟି ଆସି ବଡ଼ କାତର ସ୍ୱରରେ କହିଲା, ମହାଶୟ, କିଛି ଭାବିବେନ । ମୁଁ ଏକଲା, ଦୟା କରି ଜଣେ ଡାକ୍ତରର ବନ୍ଦୋବସ୍ତ କରି ଦିଅନ୍ତୁ ।

ଖୁବ୍ ସୁନ୍ଦର ଗାର୍ଲଟା—ଦୁଃଖ ଓ ଭୟରେ ତାର ମୁହଁଟା ମଳିନ ଦେଖା ଯାଉଥିଲା । ଆଖି ଲୁହରେ ଛଳଛଳ । ମୁଁ ଡାକ୍ତର ସାହବଙ୍କୁ ଡାକି ଆଣିଲି । ସେ ଦେଖି କହିଲେ, ଆଜି ରାତିଟା ଆପଣ ଜାଗ୍ରତ ରହିବେ । ପ୍ରତି ଦୁଇ ଘଣ୍ଟାରେ ଔଷଧ ଦେଉଥିବେ । ମୁଁ ଇଞ୍ଜେକ୍‌ସନ ଦେଇ ଯାଉଛି । ମୋର କମ୍ପାଉଣ୍ଡରକୁ ପଠାଇ ଦେଉଛି । ସେ ରାତି ୯ଟା ଯାଏ ରହିବ । ବାମ ପାଖ ଫୁସ୍‌ଫୁସ୍ ଆକ୍ରାନ୍ତ ହୋଇଛି—ତେବେ କେସଟା କଷ୍ଟ ସେମିତି ନୁହେଁ । ରୋଗୀର ଯେବେ ରାତି ସୁଦ୍ଧା ଉପଶମ ନ ହୁଏ ତେବେ କାଲି ସକାଳୁ ମୋତେ ଦେଖା କରିବେ ।

ଡାକ୍ତର ଚାଲିଗଲେ । ବିନା ଆପତ୍ତିରେ ମୁଁ ତାଙ୍କୁ ଫିସଟା ଦେଇ ଦେଲି । ମେନେଜରଙ୍କୁ କହିଲି, ଟିକଏ ନୁକରଟିଏ ଦେବାକୁ । ସେ ମଧ୍ୟ ସାହାଯ୍ୟ ବହୁତ କଲେ । ଶାନ୍ତାକୁ ବୁଝାବୁଝି କରି ଦେଲୁ । ଡବଲ ନିଉମୋନିଆକୁ ଗତ କରୁଛି । ଶାନ୍ତା ବୁଝି ପାରିଲାଣି । ଏକମାତ୍ର ପିତା । ସେ ତାର ଦୁନିଆଁ । ଖାଉ ନ ଥାଏ । ନୁକର ଆଣି ଖାଦ୍ୟ ଥୋଇ ଦେଲା । ମୁଁ ତ ଖାଇ ଥାଏ । ତାକୁ ଯେତେ କହିଲି, ସେ ରାଜି ହେଲାନି ।

ଖାଲି କାନ୍ଦୁଥାଏ । ଶେଷରେ ବାଧ୍ୟ କରିବାରୁ ସେ କହିଲା, ଆପଣ ନ ଖାଇଲେ ମୁଁ ଖାଇବିନି···

ବାଧ୍ୟ ହୋଇ ଖାଇଲି ଦ'ଟା । ରାତିରେ କମ୍ପାଉଣ୍ଡର ଆସି ଦେଖିଲେ । କହିଲେ, ଅବସ୍ଥା ବେଶ ଭଲ । ମେନେଜର ରାତି ୧୨ଟାରେ ଗଲେ । ଏକାକୀ ରହିଲି ତା' ପାଖରେ ମୁଁ । କେବେ ତ ଟୋକୀଙ୍କ ମେଳରେ ଏକୁଟିଆ ହୋଇ ରହିନି । ଦେହ ପୁଲକିତ ହୋଇ ଉଠିଲା । ଭଗବାନଙ୍କୁ ଡାକିଲି ଲୋକଟା କେମିତି ଭଲ ହୋଇଯାଉ ।

ରାତି ସାରା ଉଜାଗର ରହିଲି । ବାରଣ୍ଡାରେ ସୁକରଟା ଶୋଇ ଘୁଙ୍ଗୁଡ଼ି ମାରୁଥାଏ । ଶାନ୍ତାକୁ ମୁଁ ବେଳେବେଳେ ଚାହେଁ, ଦେଖେ ତାର ଆଖି ଛଳ ଛଳ—ବେଳେବେଳେ ସେ ମୋତେ ଏକଧ୍ୟାନରେ ଚାହେଁ । ଭ୍ରୂକ୍ଷେପ ନ କରି ମୁଁ ରୋଗୀର ଅବସ୍ଥା ପ୍ରତି ଦୃଷ୍ଟି ଦେଉଥାଏ···

ରମେଶ ବାବୁ ଆଖି ଖୋଲିଲେ, ଶାନ୍ତାକୁ ପାଖକୁ ଡାକିଲେ । ଶାନ୍ତା କାନ୍ଦିଲା, ଦୁଇଟୋପା ଲୁହ ମଧ୍ୟ ତାଙ୍କ ଆଖିରୁ ବୋହି ପଡ଼ିଲା । ନିଜର କୋହ ସମ୍ଭାଳି ନ ପାରି ମୁଁ ଘର ଭିତରୁ ବାହାରକୁ ଚାଲି ଆସିଲି । ଶୁଣୁଥାଏ, ଶାନ୍ତା ମୋର ପରିଚୟ ଦେଉଛି । କିଛି ସମୟ ପରେ ଶାନ୍ତା ଡାକିଲା । ମୁଁ ଆସିଲି । ନମସ୍କାର କଲି । ହସ ହସ ମୁହଁରେ ସେ ମୋତେ ଆଶୀର୍ବାଦ କଲେ । ଦେଖିଲି ଜ୍ୱରତାପ ପ୍ରାୟ ୧୦୨ ରହିଛି । ଫଳ ରସ ଟିକିଏ ଦେଲି । ଶାନ୍ତାକୁ ମନା କଲି ଆଉ ବେଶି କଥାବାର୍ତ୍ତା ନ କରିବାକୁ ।

କଡ଼ ଲେଉଟାଇ ସେ ଶୋଇଲେ । ଶାନ୍ତାର ପରିଚୟ ନେଲି । ଧନୀ ଆଡ଼ଭୋକେଟର ଏକମାତ୍ର କନ୍ୟା ସେ । ମାତୃହୀନା । ପିଲାଦିନରୁ ପିତୃସ୍ନେହରେ ପରିପୁଷ୍ଟ ହୋଇ ଆସିଛି । ମାଟ୍ରିକ୍ ପଢ଼ୁଛି । ଭଲ ପଢ଼େ । ସେ ମୋର ପରିଚୟ ନେଲା । ଫେଲ୍ କଥା କହିଲି ନି । ବଡ଼ ଦୁଃଖିତ ହେଲା ମୋର ପିତୃହୀନ କଥା ଶୁଣି ।

ରାତି ପାହିଲା । ଡାକ୍ତରଙ୍କୁ ଡାକି ଆଣିଲି । ସେ କହିଲେ, କିଛି ଭୟ ନାହିଁ । କାଲି ସେ ମଧ୍ୟ କଲିକତା ଯିବା ପାଇଁ ସକ୍ଷମ ହୋଇ ପାରିବେ ।

ଘୁମ ଲାଗୁଥାଏ । ଟିକେ ଶୋଇ ପଡ଼ିଲି । ଉଠି ଦେଖେ ଦଶଟା ବାଜିଲାଣି । ଶାନ୍ତା ବସୁ ବସୁ ଢୁଳେଇ ପଡ଼ୁଛି । ରୋଗୀ ନିକଟରେ ବସିକରି ରହିଛି । ମେନେଜର ଆସି ଖବର ନେଇଗଲେ ।

ଘଡଇଟା ଦୁଇଟା ପିଲ ଆଣି ଧୋଇ ଦେଇ ଶାନ୍ତାକୁ ଡାକିଲି । ସେ ଉଠିଲା । ପୁଣି ସେଇ ଦୃଷ୍ଟିର ସ୍ନେହାଣି ଓ ଅଶ୍ରୁ ଛଳ ଛଳ ଆଖି ।

ମୁଁ ବୁଝିଲି । କହିଲି, ବ୍ୟସ୍ତ ହୁଅନ୍ତୁ ନ—

ବ୍ୟସ୍ତ ମୁଁ ନାଁ ଆପଣ ?

ଛାଡ଼ନ୍ତୁ ସେ କଥା—ଚାଲନ୍ତୁ ମିଲ୍ ଖୁଆଇ ଦିବ ।

ସେ ମୋର ହାତ ଧରି ନେଇଗଲେ । ମୁଁ ହାତ ଧୋଇଲି ।

ବସିଲି । ଦେଖିଲି, ଶାନ୍ତା ଖାଲି ମଝିରେ ମଝିରେ ଛଳ ଛଳ ଆଖିରେ ବାରମ୍ବାର ଚାହୁଁଛି—

ଭୁବନ କହିଲା, ତତେ କିଏ ନ ବୁଝିବ ବାପୁ—ତୋର ସେଥିଭ ଚମ୍ପା ଭାରି ସବୁ ପତଳା ରୋମାଣ୍ଟିକ୍ ଚେହେରା—କେବେ କ'ଣ ଭୁ ଗରିବ ଘରର ପରି ଦେଖାଯାଉ ? ତୋତେ ତ ସେ ବୁଝିଥିବ ଶୁଣିଥିବ ।

ହଁ, ତା ପରେ ମୁଁ ଉଠି ଚାଲିଗଲି । ବାପା ତାଙ୍କର ଭଲ ଥାନ୍ତି । ସନ୍ଧ୍ୟା ହେଲା ; ଆସିଲା ରାତି । ଡାକ୍ତର ଆସି ଦେଖିଗଲେ । ସବୁ ଭଲ ଅଛି । ରାତି ୯ଟା ବେଳକୁ ରୋଗୀ ଶୋଇ ଆସିଲା । ମତେ ନିଦ ଲାଗିଲା । ପଦାରେ ଆସି ମୁଁ ଶୋଇ ପଡ଼ିଲି ।

ଉଠି ଦେଖେ ଶାନ୍ତା ଆସି ମୋର ବିଛଣାରେ ଶୋଇ ଯାଇଛି । ଫୁଟନ୍ତା ଗୋଲାପ ପରି ମୁହଁ···ଅନିମେଷ ଆଖିରେ ମୁଁ ତାକୁ ଚାହିଁଲି । ଉଠି ପଡ଼ିଲି । ଭାବିଲି, କିଏ କାଳେ କ'ଣ ଭାବିବ ? ଯଦି ତାଙ୍କ ବାପା ଦେଖିଥିବେ···

ଉଠିଗଲି ରମେଶ ବାବୁଙ୍କ ପାଖକୁ । ସେ ଗାଢ଼ ନିଦରେ ଶୋଇଛନ୍ତି । ନିଦ ଲାଗିଲା ନାହିଁ । ଦେହ ସାରା ଉତ୍ତେଜନା ଆଉଟା ଧାତୁ ପରି ଗରମ ଲାଗୁଥାଏ । ବସିଲି ।

ରାତି ପାହିଲା । ଶାନ୍ତା ଉଠିଲା । ସେ ଦିନ କଥା ହେଲା ତାଙ୍କ ମାମୁଁଙ୍କ ପାଖକୁ ତାର କରିବାକୁ ହେବ । ରବିବାର । ମୁଁ ତାର କଲି ।

ରମେଶ ବାବୁ ବେଶ୍ ସୁସ୍ଥ ହୋଇ ଗଲେଣି । ଜ୍ୱରର ମାତ୍ରା ଆଉ ନାହିଁ । ଶାନ୍ତାକୁ ଡାକି କହିଲେ, 'ଯାଅ, ବାସୁବାବୁଙ୍କ ସାଙ୍ଗରେ ସହରଟା ବୁଲିଆସ । ସିନେମା ମଧ୍ୟ ଯାଇପାର । ଖଟିଖଟି ଅବସାଦ ଲାଗୁଥିବ ।

ମୁଁ ଅସମ୍ମତ ହେଲି । ଭଦ୍ରଲୋକ ବାରମ୍ବାର ଅନୁରୋଧ କଲେ । ସିନେମା ଗଲୁ ।

ଫେରି ଆସିଲୁ ସନ୍ଧ୍ୟାବେଳକୁ । ରମେଶବାବୁ ବାହାରେ ଟହଲୁଥିଲେ । ଦେଖିଲା ମାତ୍ରେ କହି ପକାଇଲେ କି ସିନେମା ଗଲ ନାହିଁକି ?

ହଁ, ମାଟିନି ଯାଇ ଫେରିଲୁ—ଶାନ୍ତା କହିଲା । କ୍ରମାଗତ ଅନିଦ୍ରା ଫଳରେ ଦେହ ମୋର ଅଳସ ଲାଗୁଥାଏ । ମୁଁ ମୋ ରୁମ୍‌ରେ ଶୋଇ ପଡ଼ିଲି । ପ୍ରାୟ ୯ଟା ବେଳକୁ ରମେଶବାବୁ ଡାକିଲେ । ଉଠି ପଡ଼ି ପୁଣି ଶୋଇଲି । ଶାନ୍ତା ଆସି ଉଠାଇଲା । ଉଠିଲି । ନିଦ ମଳମଳ ଆଖିରେ ଦେଖିଲି ତା'ର କି ସୁନ୍ଦର ଚେହେରାରେ ?

ଆଉ ନିଦ ହେଲାନି । ରମେଶବାବୁ ଶୋଇ ନ ଥିଲେ । ମୁଁ ତଳକୁ ଆସିଲି ଟିକିଏ ବୁଲାଚଲା କରିବା ପାଇଁ । ଶାନ୍ତା ପଛରୁ ଡାକିଲା । ଫେରିଗଲି । ରମେଶଙ୍କୁ ପଚାରିଲେ, କୁଆଡେ ଯାଉଛନ୍ତି ଆପଣ ?

ଯାଉଛି ଟିକେ ସମୁଦ୍ର କୂଳକୁ ବୁଲି ।

ଶାନ୍ତାକୁ ସାଙ୍ଗରେ ନେଇଯାନ୍ତୁ । ତା'କୁ ଭଲ ଲାଗୁ ନ ଥିବ । ବହୁତ ପରିଶ୍ରମ କରିଛି ସେ···

ଶାନ୍ତା ଶାନ୍ତଶିଷ୍ଟ ପିଲାଟି ଭଳି ପଛେ ପଛେ ଆସିଲା । ସମୁଦ୍ର କୂଳକୁ ବୁଲିଲୁ । କି ସୁନ୍ଦର ଦୃଶ୍ୟ···ସୁଦୂରଆଡେ ଚନ୍ଦ-ଚକଚ ପୃଥିବୀ—ତରଙ୍ଗାୟିତ ନୀଳ ସମୁଦ୍ର—ଅସ୍ପଷ୍ଟ ମେଦୁର ଦିଗ୍‌ବଳୟ··· ସୁଶୀତଳ ପବନ···

ଛୁଟି ଥିଲା ମୋର । ମନଟା ଉତଳା ହୋଇ ଉଠିଲା । କେତେ କେତେ ଲୋକ ଯୋଡ଼ି ଯୋଡ଼ି ହୋଇ ବୁଲୁଥିଲେ । ନିଃସଙ୍ଗ ଜୀବନ ଧରି କେତେ ଜଣ ମଧ୍ୟ ପଦଚାରଣ କରୁଥିଲେ ।

ନିଃସଙ୍ଗ ଜୀବନଟା ମୋର ଏବେ ଶାନ୍ତିରେ ସେ ସାଥୀ ଜଣେ ପାଇଛି—ଭାଗ୍ୟବାନ ମୁଁ ।

ବୁଲୁଥାଉଁ । ଶାନ୍ତା କେତେ କେତେ ସୁନ୍ଦର କଥା କହୁଥାଏ । କ୍ରମେ ଲୋକ ପତଳା ଥା'ନରେ ହେଲୁଣି । କହିଲି, ଫେରିଯିବା—

ଶାନ୍ତା କହିଲା, କାହିଁକି, ଏପରି ବୁଲିବାକୁ କ'ଣ ଆପଣଙ୍କୁ ଭଲ ଲାଗୁନି···ଦିଗ୍‌ବଳୟକୁ ବୁଲିଯାନ୍ତେ—କଣ୍ଠର ସ୍ୱରରୁ ବୁଝିନେଲି ; କହିଲି, ଶାନ୍ତା ··ମୁଁ ତମକୁ ବୁଝିପାରୁଛି । ନିରର୍ଥକ ତୁମର କଳ୍ପନା—ଫେରିଚାଲ । ଜୀବନଟା ଏତେ ସହଜରେ ଦିଆ ନିଆ ହୁଏ ନାହିଁ । ମୁଁ ମୋର କର୍ତ୍ତବ୍ୟ ପାଳନ କରୁଛି । ତୁମେ ତୁମର କର୍ତ୍ତବ୍ୟ କରନାହିଁ···

ଭୁଲ ବୁଝୁଛନ୍ତି ଆପଣ । ମୁଁ ଦୁଇଥର ପୁରୀ ଆସିଛି । ଏ ସମୁଦ୍ର କୂଳ ମୋତେ କିଛି ନୂଆ ନୁହେଁ—ପରିଚିତ ଜାଗା । କେଜାଣି କାହିଁକି ଆଜି ଏସବୁ ନୂତନ ସୁନ୍ଦର ଲାଗୁଚି ।

ସେ ତୁମର ମନର ବିକାର ।

ଶାନ୍ତା କିଛି କହିଲାନି । ମୋର ହାତଧରି ଛଳଛଳ ଆଖିରେ ମୋତେ ଚାହିଁଲା । ଅଜଣା ଆବେଗରେ ମୁଁ ତା'ର ବାମ ହାତଟିକୁ

ଧରି ନିଜ ଆଡ଼କୁ ଟାଣି ଆଣିଲ । ବାଳିକା ହୁଏ ଆସିଲ—ଲାଗି ଆସିଲ ଲୁଚି ଆଡ଼କୁ । ଚୁମ୍ବନଟିଏ ଦେଲ ।

ତା'ପରେ ନିଜକୁ ଆସ୍ୱତ କରିବାକୁ ଚେଷ୍ଟା କଲ । ଦେହସାରା ଉତ୍ତପ୍ତ ତରଙ୍ଗ—ସାଧାରଣ ଉତ୍ତେଜନା । ସେଦ୍ୱ ମୁହୂର୍ତ୍ତଟିକୁ ସମ୍ଭାଳି ନ ନେଇଥିଲେ, ଶାନ୍ତା ଯେପରି ମୋ ପ୍ରତି ଆକୃଷ୍ଟ ହୋଇ ପଡ଼ିଥିଲ, ସେଇଠି ସମୁଦ୍ର କୂଳେ ତ...... ?

ଭୁବନ ଶିଡ୍‌କାରି କରି ପାଦପୂରଣ କଲ "ଫାୟାର" Fire ତା'ପରେ—

ଆରମ୍ଭ କରୁଛି ବାପୁ, ନଧି ପଶିଆସିଲା । ନଧି ହଷ୍ଟେଲ ପିଅନ । କହିଲା, 'ବାବୁ, ସୁପରିଣ୍ଟେଣ୍ଡେଣ୍ଟ ଡାକୁଛନ୍ତି......

ଗୁଲ ଯାଇଛି—ଭୁବନ କହିଲା ।

ବାପୁ ପଚାରିଲା, 'କାହିଁକି ଡାକୁଛନ୍ତି—

ମେସ୍ ଟଙ୍କା

ଘରୁ ଆସିନି—

ଭୁବନ ନୀରବ ରହିଲ । ବାପୁ କହିଲ, ମୁଁ ତ ତାହାହିଁ ଆଶଙ୍କା କରୁଥିଲ । ମୁଁ ତମର ବାପାଙ୍କ ସ୍ୱଭାବ ଜାଣେ । ଏକଜିଦିଆ ଲୋକ । ବିବାହ ସମ୍ପର୍କରେ ତୁମର ମତାମତ ଶୁଣି ସେ ଟଙ୍କାପଇସା ଦେଇ ନ ଥିବେ କିନ୍ତୁ ତୁ ସେଥିପାଇଁ ଚିନ୍ତା କର ନା । । Cross words puzzlରେ ମୁଁ ତ ଦୁଇଥର ସୁବିଧା ଲେଖାଏ ପାଇଥିଲି । ଡାକଘରେ ଅଛି । ମେସ ଟଙ୍କା କାଲି ଦେବା—କିନ୍ତୁ ତୁ ସେ ସୁଜାତା କଥା ଏବେ ଭାବନା...ପଢ଼ । ଦେଖାଯିବ...

ଭୁବନର ଆଖି ସଜଳ ହୋଇ ଆସିଲ । କୃତଜ୍ଞତାର ବ ଏକ ସ୍ୱର୍ଗୀୟ ଶାନ୍ତିରେ ସେ ବାପୁ ଆଡ଼କୁ ଅନାଇଁ ରହିଲ ।

ବାପୁ କହିଲେ, ପାଗଳ···ଏ ବୟସର ଖାଦ୍ୟଙ୍କୁ ତୁ ଆଦର୍ଶ ସ୍ଥାନ ଦେଲୁ ସତ । କିନ୍ତୁ ଭଲ ହେଲାନି—ଏତେ ବଡ଼ ବଖତ ଦୁନିଆଁର ତୋର ତ୍ୟାଗ କଥା ଜାଣିବନି । ବରଂ ଦୁନିଆର ସୁଅରେ ଭାସି ନ ଗଲେ ଦେଖୁଚୁ ତ କି ବିପଦ···ନିଧି ପୁଣି ଆସି ଡାକିଲା । ଭୁବନ ଉଠି ଚାଲିଲା ହଷ୍ଟେଲ ଅଫିସକୁ । କେଜାଣି କାହିଁକି ବାପୁ ସାଙ୍ଗେ ସାଙ୍ଗେ ଦୀର୍ଘଶ୍ୱାସଟିଏ ପକାଇଲେ ।

## * ତେର *

ସୁଜାତା ଖଟ ଉପରେ ଶୋଇ ରହି ଅଞ୍ଜଳିର ବିବାହ କଥା ଭାବୁଛି ।

ଏଇ ଅଞ୍ଜଳି···ଦିନେ କହୁଥିଲା, ହୃଦୟ ତା'ର ବିଚଳିତ ହୋଇ ପଡ଼ୁଛି । ମୋତେ କେତେ ଅବା ସାନ୍ତ୍ୱନା ନ ଦେଇଛି । ମୋରି ଆଗରେ ତା'ର ଜୀବନ ପୁରସ୍କୃତ ହୋଇ ଉଠିଛି । ପ୍ରେମ ନାହିଁ, ଆଦର୍ଶ ନାହିଁ,—Love ନାହିଁ···ବାପା ମା' ତା'ର ଯାହାକୁ ଠିକ କରିଛନ୍ତି, ସେ ହେବେ ତା'ର ଜୀବନର ସର୍ବସ୍ୱ—ହୃଦୟର ଆରାଧ୍ୟ । କହୁଥିଲା, ସେ ତାଙ୍କୁ ଦେଖିଛି···ବେଶ ସୁନ୍ଦର ଚେହେରା । ଖୁବ ଭଲ ପଢ଼ନ୍ତି···ଥିଲାବାଲାର ସନ୍ତାନ ।

ଏମ୍. ଏ ପଢ଼ୁଛନ୍ତି । ଛଠି ପଦ ହଁଆ ନାଁଆ ହୋଇ ନା । ସମ୍ପୂର୍ଣ୍ଣ ସ୍ୱତନ୍ତ୍ର ଅଞ୍ଜଳିର ଜୀବନ ।

ଆଚ୍ଛା, ଝିଅଟି ଏ ଆଧୁନିକ ଯୁବତୀର କେମିତି Love Letter ଖଣ୍ଡେ ଲେଖିବାକୁ ହୁଏ, ଜାଣି ପାରିଲି ନି । ଖାଲି ମୋର ଛଠି ପଦେ—ତା'ର ଆଗ୍ରହରେ ଦି'ପଦ କଥା ଲେଖି ଦେଇଯାଏ···

ସେଇ ଅଞ୍ଜଳି ମୋର ଅନ୍ତରଙ୍ଗ । ତା'ର ଜୀବନରେ ନାହିଁ ସ୍ୱର୍ଣ୍ଣସ୍ୱପ୍ନର ଉତ୍ତପ୍ତ ଲମ୍ବା ଦଙ୍ଗା ହେଙ୍ଗାମା, ବାଧାବନ୍ଧକ କିଛି । ମୁଁ ଜାଣିନି ଏ ସବୁ ଜାଣିଶୁଣି ବରଣ କଲି ? ଜୀବନଟା ଖାଲି ତା ହତାଶରେ ଘୋଡ଼ି ଯାଉଛି । ଓଃ—

କର ଲେଉଟାଇଲା । କି ଯନ୍ତ୍ରଣା ତା ହୃଦସ୍ୱରେ । ତୁମ ସାଥି ଅଭାବ...ସ୍ୱିଚ୍ ଅଫ୍...ସୁଜାତା ଭାବୁଛି, ହୁଏତ ଦିନେ ଏମିତି ତା'ର ଜୀବନର ସୁଇଚ୍‌ଟା ଅଫ୍ ହୋଇଯାଇ ପାରିବ, ଅପରନ୍ତୁ ଅନ୍ଧକାର ଚେତିକି...କି ମାରାତ୍ମକ କଳ୍ପନା କରୁଛି ସୁଜାତା...

ଆଖିରୁ ଲୁହ ଝରି ଯାଉଛି—ଦେଖିବାକୁ କେହି ନାହିଁ—ପୋଛି ଦେବା ତ ଦୂରର କଥା ।

ମା ?—ଏଇ ମା' ଦିନେ ଭୁବନବାବୁଙ୍କୁ ପୁତ୍ରବଧୂର ସୋଳଣା ଭଲ ପାଉଥିଲେ...ଆଜି ଦେଖୁଛନ୍ତି କି ଘୃଣା ଚକ୍ଷୁରେ—ସହି ପାରୁନି ସୁଜାତା, ଆଉ ସହି ପାରୁନି ।

ପ୍ରୋହିତ [illegible]...ସେ ହେଲେ ତା'ର ଜୀବନର କାଳ... କୁଆଡ଼ୁ ତା' ପାଇଁ ଯୋଗାଡ଼ କଲେ ଏକ ଏମ୍.ଡି.ଡି. ଏସ୍ ଯୁବକ । ତାଙ୍କ ଦାଦାଙ୍କ ସହିତ ବାବାଙ୍କର ଘନିଷ୍ଠତା ବହୁତ...ତାଙ୍କ ଭାଇ ତ ବାପାଙ୍କର ବଡ଼ ବନ୍ଧୁ...ଖିଆପିଆ, ଖେଳାବୁଲା, ମଦନିଶା... ସବୁଥିରେ । ଏତେ ବଡ଼ ପ୍ରତିବନ୍ଧକ ମୋର ଜୀବନରେ କ'ଣ ଆସିବାର ଥିଲା ପ୍ରଭୁ !

କ'ଣ ଶୁଣୁଛ ? ବହୁତ ଥର ଶୁଣିଲଣି ତ ବହୁତ କଥା ଭୁବନବାବୁଙ୍କ ସମ୍ବନ୍ଧରେ । ସେ କୁଆଡ଼େ ଭଲ ପଢ଼ନ୍ତି...ନାହିଁ... ଖେଳ ମଧ୍ୟ ସେତେ ଭଲ ନୁହେଁ । ଖାଲି ତେଢ଼େବଙ୍କା ଫେସନ ଦେଖେଇ କଲେଜ ସାରା ବୁଲୁଥାନ୍ତି । ବଡ଼ ଦଳଟିଏ ଅଛି ତାଙ୍କର, ଏଣୁକରି ପ୍ରିନ୍‌ସିପାଲ୍ କୁଆଡ଼େ ସେ ଦଳ ଉପରେ ବଡ଼ କଡ଼ା ଆଖି ରଖିଥାନ୍ତି ।

ରମା ବଖରର ସବୁ କଥା ଆସି ଝୁପୁଝୁପୁ କହିଯାଏ । ସୁଜା-
ତାର ହୃଦୟରେ ବାରମ୍ବାର ଆଘାତ ଲାଗେ । ସେ ଭାବେ, ଏଣିକି
ଆଉ ସବୁ ଶୁଣିବା ଭଲ ନୁହେଁ । ମାତ୍ର କୌତୁହଳଟା ଆହୁରି ବଢ଼ି
ଉଠେ ମନ ଭିତରେ···ସେ ଚପ୍ଟରେ···ରମା କହେ···

ରମା କହିଲା, ଦିନେ କୁଆଡ଼େ ଡାକ୍ତର ଦାସ ତା'ର ବାବାଙ୍କୁ
କହୁଥିଲେ—ଆପଣ ଏ ସବୁ ବରଦାସ୍ତ କରୁଛନ୍ତି କିମିତି ? ଭୁବନ,
ଗୋଟାଏ ଲଫଙ୍ଗା ଯୁବକ—ତାକୁ ଏତେଟା ପ୍ରଶ୍ରୟ ଦେବା ଉଚିତ
ହୋଇନାହିଁ । ସେ ସେ କାହିଁକି ଏଠାକୁ ଆସେ ?

ବାବା କୁଆଡ଼େ କିଛି ଉତ୍ତର ଦେଲେ ନାହିଁ । ସାଙ୍ଗେ
ସାଙ୍ଗେ ଆସି ମା'ଙ୍କୁ ସବୁ କଥା କହିଲେ ଏବଂ ତାଗିଦ କରିଗଲେ,
ଆଉ ଏଣିକି ଯେପରି ସେ ଟୋକାର ପାଦ ନ ପଡ଼େ ଏ ଘରେ ।

ବୋଉ ମଝି ବାବାଙ୍କୁ ମୁହେଁ ମୁହେଁ ଜବାବ ଦେଲା ପରି
କହିଲା, କାହିଁକି, ତୁମେ ତାଙ୍କୁ କହି ଦେଉନ···ମୁଁ ମାଇପି
ଲୋକ । କିମିତି କହିବି···

ବାବା ରାଗି ଉଠିଲେ । କହିଲେ, କିମିତି କହିବ···ଦେଖ,
ସୁଜାତାକୁ ମନା କରିଦଅ···

ବାପା ଗମ ଗମ ହୋଇ ଚାଲିଗଲେ । ବୋଉ ରମାକୁ କହିଲା
ଏଣିକି ଭୁବନବାବୁ ଆସିଲେ କହିବୁ, ସେ ଏଠିକି ଆସନ୍ତି
କାହିଁକି ?

ରମା କିନ୍ତୁ ପ୍ରଭୁର ଆଦେଶ ପାଳନ କରି ପାରି ନାହିଁ । ସୁଜା-
ତାର ଦେହମନ ଜଳୁଚି । ଭାବିଲା, କି ଅଭାଗ୍ୟ ଜନ୍ମ ତା'ର, ତା'ରି
ଲାଗି ଏତେ କଥା—

ହଠାତ୍ ରୁମ୍‌ଟା ଆଲୋକିତ ହୋଇ ଉଠିଲା । କି ବର୍ଣ୍ଣିଳ
ପ୍ରବାହ ଏ ଆଲୋକର ?

ସୁଜାତା !

ପରିଚିତ ଓ ଆକାଂକ୍ଷିତ କଣ୍ଠର ଡାକ ପରି ଶୁଭିଲା । ସୁଜାତାର ଲୁହ ଛଳ ଛଳ ଆଖି ଝାପ୍‌ସା ଆଲୋକରେ ବୁଜି ହେଲା ପରି ଜଣାଗଲା । ସ୍ୱପ୍ନୋତ୍‌ଥିତ ପରି ସେ କହିଲା, ଆପଣ···ଓଃ···ଏତେବେଳେ କାହିଁକି ?

ଚାଲି ଆସିଲି ଟିକେ···

ସୁଜାତାର ଆଖିରୁ ଧାର ଧାର ହୋଇ ଲୁହ ବହିବାକୁ ଲାଗିଲା । ଭୁବନ ପଚାରିଲା,··· ଏ କଣ···?

ଆପଣ ବସନ୍ତୁ ।

ଭୁବନ ବସି ପଡ଼ିଲା । ସୁଜାତାକୁ କୋଳକୁ ଟାଣିଆଣି ସେ ନିଜ କାନିରେ ତା'ର ଲୁହ ପୋଛିବାକୁ ହାତ ଉଠାଇଲା । ସୁଜାତା ମନା କଲା···

ଭୁବନ କହିଲା ଏ – କ'ଣ···

ଥାଉ···ଲୁହକୁ ଆଉ ଦ୍ୱିଗୁଣିତ କରନ୍ତୁ ନାହିଁ କମ୍ବା ଜାଳାର ଦାହ ବଢ଼ାନ୍ତୁ ନାହିଁ ।

ତୁମ କଣ୍ଠରେ ଆଜ ଏ ଭାଷା କାହିଁକି ସୁଜାତା···

ସୁଜାତା ବ୍ୟାକୁଳ ଅଧୀର ଦୃଷ୍ଟିରେ ଭୁବନକୁ ଚାହିଁଲା । ଭୁବନର ହୃଦୟ ସମବ୍ୟଥାରେ ପ୍ରତିଧ୍ୱନିତ ହୋଇ ଉଠିଲା । ସେ କହିଲା, 'ମୁଁ ତ ତମକୁ ଥରେ କହିଚି, ସୃଷ୍ଟିର କୌଣସି ଶକ୍ତି ଆମର ମିଳନର ଛନ୍ଦ ଭଗ୍ନ କରି ପାରିବ ନାହିଁ—

ହଁ,

ତା' ହେଲେ—

ଅବୋଧ ଶିଶୁଟି ପରି ସୁଜାତା କାନ୍ଦିବାକୁ ଲାଗିଲା । ଭୁବନର କରୁଣ ହୃଦୟରେ ଗଭୀର ଆନ୍ଦୋଳନ···ଆଖିରୁ ଦୁଇଧାର ଲୁହ ଗଡ଼ି ପଡ଼ିଲା ।

ସୁଜାତା ଚାଲିଗଲା । ଖଟ ଉପରେ ଶୋଇ ରହି ଭୁବନ ଭାବିଲା ତାର ଅତୀତ ଭବିଷ୍ୟତ···କେତେ କ'ଣ···

ମୁଣ୍ଡ ବଥାଇଲାଣି ।

ସୁଜାତା ଫେରିଆସି କହିଲା, 'ଉଠନ୍ତୁ ଟିକେ ଚା' ନିଅନ୍ତୁ—

ଭୁବନ ମନା କଲା, ଚା' ଦରକାର ନାହିଁ । ମୁଣ୍ଡଟା ବଡ଼ ବ୍ୟଥା କରୁଛି—ଟିକେ ଅମୃତାଞ୍ଜନ ଆଣ—

ସେଲ୍‌ଫରୁ ଅମୃତାଞ୍ଜନ ଶିଶି ଆଣିଲା ସୁଜାତା···ଖଟ ଉପରେ ବସି ଅଙ୍ଗୁଳି ଦ୍ୱୟରେ ତା'ର ମୁଣ୍ଡରେ ଲେପି ଦେଲା ଅମୃତାଞ୍ଜନ, ଘଷି ଦେଲା । ମୁଣ୍ଡଟା ବଥାଉଛି । ଲେପନର ଚୁଗୁଚୁଗୁ ଶିଞ୍ଜନ ଓ ମୃଦୁଗନ୍ଧରେ ତରୁଣ ତରୁଣୀ ନିଜର ଭବିଷ୍ୟତ ଭାବି ଯାଉଛନ୍ତି ।

ଭୁବନ କହିଲା, ଆଉ···

କ'ଣ କମିଲା—

କମି ଯାଉଛି···

ଚା' ଟିକେ ଖାଆନ୍ତୁ···

ନାଁ···ଆଚ୍ଛା ତୁମେ କାନ୍ଦୁଥିଲ କାହିଁକି ?

କାନ୍ଦିବାର କଥା—ମୋର ଭାଗ୍ୟ ।

ନାଁ, ମୋର ଭାଗ୍ୟ···

ଦାପ୍ୟରେ ପ୍ରଣୟ—ଭାଗ୍ୟକୁ ମଧ୍ୟ ତରୁଣ ତରୁଣୀ ଇଚ୍ଛାରେ ନିଜର ଭାବ ଦ୍ୱନ୍ଦ୍ୱ ସୃଷ୍ଟି କରି ପାରନ୍ତି ।

ଭୁବନ ବାବୁ···

କ'ଣ···ଅସହ୍ୟ ଏଣିକି ଦେଉଛ ।

ସେଥିପାଇଁ ମୁଁ ତ କହିଲି,

ନାଁ, ତା ନୁହେଁ

ଆଜ କ'ଣ ? ଏଇ ଯେ ଡାକ୍ତର ବାବୁ କୁତ୍ସାରଟନା କରୁ-ଛନ୍ତି ଆପଣଙ୍କ ବିରୁଦ୍ଧରେ···

କ'ଣ ସୁଜାତା ! ଭୁବନ ବିଛଣାରୁ ହଠାତ୍ ଉଠି ପଡ଼ିଲା । ସୁଜାତା ବାଧା ଦେଲା ତା'ଙ୍କୁ । କହିଲା, ଶୁଣନ୍ତୁ ।

କ'ଣ, କ'ଣ କହୁଛନ୍ତି ?

ମୁଁ କହି ପାରିବ ନାହିଁ ।

କହିବ ନାହିଁ ନା କହି ପାରିବ ନାହିଁ ?

ଏ ତୁଣ୍ଡରେ ଧରିବ ନାହିଁ ।

ତେବେ କହିବ କିଏ ? କିଏ ସେ ଡାକ୍ତର—ଯେ ବର୍ତ୍ତମାନ ବାହାର ଘରେ ବସି ଖେଳୁଛନ୍ତି ?

ହଁ···

ମୁଁ ବର୍ତ୍ତମାନ ଯାଇଁ ତାଙ୍କୁ ପଚାରିବ । କ'ଣ ସେ ମୋ ନାଁରେ କହୁଛି—

ଉତ୍ତ୍ୟକ୍ତ ହେଲା ଭୁବନର ହୃଦୟ ଓ ମସ୍ତିଷ୍କ । ସେ ଉଠି ଆସିଲା । ସୁଜାତା ମନା କଲା । ଥାଉ, ସେ ଯାହା କହିବାର କହନ୍ତୁ —ତାର ଆଖିରେ ଲୁହ ।

ନାଁ ସୁଜାତା···ମୁଁ ବର୍ତ୍ତମାନ ତା'ଙ୍କୁ ମୁହେଁ ମୁହେଁ ପଚାରିବ—

ଯାଆନ୍ତୁ ନାହିଁ ତା'ଙ୍କ ପାଖକୁ—ସେ ମଦ୍ୟପ, ଦୁଷ୍ଟ ଓ ଦୁଶ୍ଚରିତ୍ର ।

ମୋର ସେଥିରେ ଯାଏ ଆସେନା କିଛି । ସିଧା ସିଧା କଥା-ବାର୍ତ୍ତା କରି ମୁଁ ଆସେ···

ଭୁବନ ବାହାରିଲା—ମସ୍ତିଷ୍କରେ ଉତ୍ତେଜନା, ମନରେ ଆକ୍ରୋଶ ଏବଂ ଦେହସାରା ଉତ୍ତପ୍ତ କମ୍ପନ । ସୁଜାତା ମନା କରୁଥିଲା । ସେ ଚାଲିଲା ସିଧା ବାହାର ଘରକୁ । ପଛେ ପଛେ ଆସିଲା ସୁଜାତା ।

ବାହାର ଘରେ ଖୁଲିଛି ପଶା···ରମେଶ ବାବୁ ଉପରେ ଅଛନ୍ତି । ଡାକ୍ତର ସାମନ୍ତରାୟ, ଡେପୁଟି କଣ୍ଟ୍ରାକ୍ଟର ଚଉଧୁରୀ, କୁମିଲା ବ୍ୟାଙ୍କର ହେଡ୍ ଆକାଉଣ୍ଟାଣ୍ଟ ମହାପାତ୍ର ଏବଂ ରମେଶ ବାବୁଙ୍କର ଜଣେ ମେନେଜର ବସି ଖେଳ କରୁଛନ୍ତି । ତାସରେ ଘର ଫାଟି ପଡ଼ୁଛି ।

ଭୁବନ ଚେୟାରଟା ଉଡ଼ ଆଣି ବସି ପଡ଼ିଲା । ପଚାରିଲା, ଡାକ୍ତର ବାବୁ, ଆପଣଙ୍କ ସହିତ ଟିକେ କଥାବାର୍ତ୍ତା ଅଛି ।

ଖେଳ ବନ୍ଦକରି ସେ ପଚାରିଲେ, କ'ଣ କୁହନ୍ତୁ···ଆପଣତ ଅନ୍ୟମନସ୍କ ରହୁଛନ୍ତି, କେମିତି କହିବ ? ଡାକ୍ତର ସାମନ୍ତରାୟ ତା' ମୁହଁକୁ ଚାହିଁଲେ । ହାତରୁ ଗୋଟିଏ ଖସି ପଡ଼ିଲା । ମୁହଁଟା ଅତି ଅସ୍ୱାଭାବିକ ଶଙ୍କିତ ଦେଖାଗଲା ।

ଆଚ୍ଛା, କ'ଣ କୁହନ୍ତୁ···

କ'ଣ କହିବ ? ଶୁଣୁଛି, ଆପଣ ମୋ ପଛରେ ମୋ ବନ୍ଧୁଙ୍କରେ କ'ଣ କଥା ପ୍ରଚାର କରନ୍ତି ।

ଅପଦସ୍ଥ ହେଲା ପରି ସେ ଉତ୍ତର ଦେଲେ, ନାଁ···

ମୁଁ କହୁଛି ହଁ'—

'ନାଁ, କେବଳ ନୁହେଁ, ଆପଣ ପ୍ରମାଣ ଦେଇ ପାରିବେ, ହଁ···ଦେବ ।

ତା' ହେଲେ ବଞ୍ଚନ୍ତୁ କିନ୍ତୁ ମୁଁ କେବଳ ଏତିକି କହି ପାରେ ଯେ ଆପଣ ଏଠିକି ଆସି ଭୁଲ କରୁଛନ୍ତି କାହିଁକି ? ଆଉ ଆପଣ ତ ଏହିପରି କେତେଗୁଡ଼ାଏ କଥା ମୋ ପାଇଁ କହି ବୋଧହୁଏ ଠିକ୍ କରି ନାହାଁନ୍ତି—

ନାଁ, ଠିକ କରିଛି ।

ଉତ୍ତପ୍ତ କଣ୍ଠରେ ଭୁବନ ପଚାରିଲା, ଠିକ୍ କରିଛନ୍ତି···

ଉଃ, ସେ ନାଲି ଆଖି ଯା’ଅ ତମ ପ୍ରନ୍‌ସପାଲଙ୍କୁ ଦେଖାଇବ—ସେ ଚପି ଯିବେ । ଏଠି କାହାକୁ ଦେଖାଉଚ—

ଦେଖାଉଚ ଗୋଟାଏ ଦୁଷ୍ଟ ଦୁଶ୍ଚରିତ୍ର ମଦଖୋର ଡାକ୍ତରଙ୍କୁ
ହିଁ···ଏତେ ସାହସ···

ଜୋତା କଷ୍ଟଣ୍ଡ ଦେଇ ଭୁବନ କହିଲା, Shut up, ଅନ୍ୟମାନେ ଚମକି ଉଠିଲେ । ହାଁ ହାଁ···ଏ କ’ଣ···ବୋଲି ଚତ୍‌କାର କରିବାକୁ ଲାଗିଲେ ।

ନିଜର ଉତ୍ତପ୍ତ ମସ୍ତିଷ୍କର ଆକ୍ରୋଶ ଓ ବ୍ୟକ୍ତିତ୍ୱର ଅପମାନ ସହି ନପାରି ଡାକ୍ତର ସାମନ୍ତରାୟ ଭୁବନ ଉପରକୁ ମାଡ଼ି ପଡ଼ିଲେ । କ୍ରୋଧ ଏବଂ ଅପମାନରେ ଭୁବନ ତା’ର ଜୋତା ପଟେ ବାହାର କରି ହଠାତ୍ ଦେଲା ଏକ ପାହାର ତାଙ୍କ ମୁଣ୍ଡ ଉପରେ···

ହୁଁ ବୋଲି ଡାକ୍ତର ବାବୁ ଭୁବନର ହାତକୁ ଧରିନେଇ ଦେଲେ ଏକ ମୁଥ । ଖଣ୍ଡମଚ ଧସାଧସି ମରାମରି ଚାଲିଲା । ଭୁବନକୁ ମାଡ଼ ବସିଲା ଡାକ୍ତର । କୌଶଳରେ ଭୁବନ ତା’ର ମୁଠି ଜଙ୍ଘକୁ ଚପି ଦେଲାରୁ ଯନ୍ତ୍ରଣାରେ ଡାକ୍ତର ଟିକେ ତା’ର ମୁଷ୍ଟି କୋହଳ କଲା । ଭୁବନ ତାଙ୍କୁ ମାଡ଼ ବସିଲା । ଦେଖଣାହାରୀମାନେ ଛଡ଼ାଇ-ବାକୁ ଯାଇ କିଏ କ’ଣ କେତେ ଖାଇଲେ । ଶେଷରେ ଭୁବନ ରାଗରେ ଟେବୁଲଟା ଉଠାଇଆଣି ସେମାନଙ୍କ ଉପରକୁ ଲକ୍ଷ୍ୟ କରି ଫୋପାଡ଼ିଲା । ଅବ୍ୟର୍ଥ ତାର ଲକ୍ଷ୍ୟ । ଡାକ୍ତରର ମୁଣ୍ଡ ଉପରେ ବାଜିବାରୁ ସେ ଆଘାତରେ ଚତ୍‌କାର କରି ଉଠିଲା ।

ଏତିକବେଳେ ରମେଶ ବାବୁ ଓ ତାଙ୍କ ସ୍ତ୍ରୀ ଘର ଭିତରକୁ ଦୌଡ଼ି ଆସିଲେ ଗୋଳମାଳ ଶୁଣି । ଲଜ୍ଜା ଓ ଅପମାନରେ ସେ ଭୁବନକୁ ତିରସ୍କାର କଲାପରି କହିଲେ, ‘ନିର୍ଲଜ, ଆଉ ଯେବେ

ଏଠିକି ଆସୁ, ତୋତେ ଜୋତା ମାଡ଼ ଦେବ । କିଏ ଅଛରେ, ସ୍ୱାଁକୁ ଧକକା ମାରି ଫାଟକ ପାର କରାଇ ଦିଅ ?

ତାଙ୍କ ମେନେଜର ବାହାରି ପଡ଼ିଲେ । ତା'ପୂର୍ବରୁ ଭୁବନ କହିଲା, 'Alright...ଯୁଇ ଆସିଲି । ଗୋଡ଼ରେ ପଟେ ଜୋତା ଲାଗିଛି, ପଶାର ଗୁଡ଼ିକାକ ମୁଣ୍ଡରୁ ରକ୍ତ ବୋହୁଛି—ତାକୁ ଜଣା ନାହିଁ । ଉତ୍ତେଜନାରେ ତାର ଦେହସାରା ଉତ୍ତପ୍ତ ଝଙ୍କାର ।

ବାହାରେ ନିବିଡ଼ ଅନ୍ଧକାର । ଟିକେ ଦୂରରେ ମ୍ୟୁନିସିପାଲଟିର ବତ୍ତି, କାଦୁଅ ରାସ୍ତା—

ଭୁବନ ଗେଟ୍ ବାହାରେ ଛିଡ଼ା ହୋଇ ଭାବିଲା, କ'ଣ ତାର ଏକ ମୁଷ୍ଟିରେ ସେ ଏତେ ବଡ଼ ବିଶାଳ ପ୍ରାସାଦକୁ ଭାଙ୍ଗି ଚୂରମାର କରିଦେଇ ସୁଜାତାକୁ ନେଇ ଚାଲିଯାଇ ପାରିବ ?

—ଓଃ...ସୁଜାତା—ସୁ—ଜା—ତା !

### ✻ ତଉଦ ✻

ବାହାର ଘରେ ଏତେ ବଡ଼ ଗୋଳମାଳ ଚାଲିଥିଲା ବେଳେ ସୁଜାତା ପାଖ ଘରେ ମୁଣ୍ଡ ବାଡ଼େଇ ଦେଲା । ରମା ନ ଥିଲେ ବୋଧହୁଏ ତାର ମୁଣ୍ଡଟା ବିଲ୍‌କୁଲ ଚୂରମାର ହୋଇ ଯାଇଥାନ୍ତା—

ପାଗଳ ଓ ଉଦ୍‌ଭ୍ରାନ୍ତଙ୍କ ପରି ସେ ଦୌଡ଼ି ଆସୁଥିଲା ଘଟଣା ସ୍ଥଳକୁ । ରମା ଅଟକାଇ ନେଲା—ଝଡ଼ର ଉଦବେଗ ବେଗପରି ପୁଣି ସୁଜାତା ଚାଲିଲା ବାଡ଼ପଟ କବାଟ ପାଖକୁ । ଉଦ୍ଦେଶ୍ୟ ଚାଲିଯିବ

ଭୁବନ ପାଖକୁ···ସ୍ୱମା ଜବରଦସ୍ତ ଟେକି ନେଇ ତାକୁ ତାର ବିଛଣାରେ ଶୁଆଇ ଦେଇ ଡାକ ପକାଇଲା । 'ମା—ମା···

ତାର ପାଟି ଶୁଣି ସୁଜାତାର ଚେତା ଫେରି ଆସିଲା । ସେ କହିଲା, ସ୍ୱମା—କିଛି ପାଟି ତୁଣ୍ଡ କରନାଁ—ଯା, ଗୁଲ୍ଲଯା—ଖବର ବୁଝ୍ କ'ଣ ହେଲା ତାଙ୍କର···ଜଲ୍ଦି ଯା,

ଆଉ ତୁମେ···କୁଆଡ଼େ ଯିବ ନାହିଁତ ?

ମୁଁ ଏଇଠି ଶୋଇ ରହୁଛି—ଯା—

ସ୍ୱମା ଶୁଦ୍ଧ ମୁଠା ଆଣି ବାଡ଼ କବାଟରେ ପକାଇ ଦେଲା । ସୁଜାତା ମା ଆସି ଡାକୁଥିଲେ । ସ୍ୱମା କ'ଣ ?

ନାଁ···ଏତେ ବଡ଼ ଗୋଳମାଳ କ'ଣ ହେଲା । ମୁଁ ତ ଶୁଣିଲି ସ୍କୁର କି ଖଣ୍ଡ···

ହଁରେ ସ୍ୱମା···ସେଇ ଯେ ଭୁବନ ବାବୁ—ଏଠିକି ଆସୁ ନ ଥିଲେ, ସେଇ ଏଠି ଡାକ୍ତର ବାବୁଙ୍କ ସହିତ ଦଙ୍ଗା ହେଙ୍ଗାମା କରିଦେଲେ । ମାନ ଗଲା, ମହତ ଗଲା । ଏଇ ପୋଡ଼ାମୁହିଁଟା ପାଇଁ ମୋ ଘରର ମାନ ମହତ ସବୁ ବୁଡ଼ିଲା ।

କ'ଣ ହେଲା···

କମିତି କମିତି କାନ୍ଦିଲା ପରି ସୁଜାତାର ମା କହିଲେ, ଡାକ୍ତର ବାବୁଙ୍କ ମୁଣ୍ଡ ଫାଟି ଯାଇଛି···ମଟରରେ ନେଇ ସେ ବର୍ତ୍ତମାନ ଗଲେ ତାଙ୍କ ଘରକୁ—କି ଦୁର୍ଯୋଗ—ପୋଡ଼ାମୁହିଁଟା ପାଇଁ ଆଜି ଏତେ ବଡ଼ କାଣ୍ଡ ଘଟିଗଲା—ସେ ଗଲା କୁଆଡ଼େ ?

ଘରେ ଥିବେ···ଦେଖେଁ···

ଭାମା ଆସି ସମସ୍ତ କହିଲା । ସୁଜାତା ପଚାରିଲା, ଭୁବନ ବାବୁଙ୍କର କିଛି କ୍ଷତି ହୋଇନି ତ ?

ଭାମା ଟିକେ ଗୁମ୍ ଖାଇଲା । କହିଲା, ନାଁ···ବୋଧହୁଏ କିଛି ହୋଇନି···

ତା'ପରେ ସୀମା ଭୁଲିଗଲା । କହିଲା, ମା···ସେ'ଶୋଇଛନ୍ତି···

ଏତିକିବେଳେ ମେନେଜର ଆସି ପାଟିକରି କହିଲେ, ଭାଗ୍ୟ ଭଲ ! ନ ହେଲେ ଏଇଠି ପ୍ରେମର ସମାଧି ନେଇଥାନ୍ତା ।

ସୁଜାତା ବାହାରକୁ ଆସୁଥିଲା । ଏ ପଦକ କାନରେ ବାଜିଲା-କ୍ଷଣି ସେ ଲେଉଟିଗଲା । ଖଟ ଉପରେ ଶୋଇ ରହି ଛୋଟ ପିଲାଟି ପରି ଭଇଁ କଇଁ ହୋଇ କାନ୍ଦିବାକୁ ଲାଗିଲା । ମନେ ମନେ କହିଲା, ଭଗବାନ, ତୁମେ କ'ଣ ପ୍ରଭୁ ଏ ଦୁଃଖିନୀ ଭାଗ୍ୟରେ ଏହା ଲେଖିଥିଲ···

ଭାବିଲା, ଅଞ୍ଜନ···ଅଞ୍ଜନ କ'ଣ ଏ ବିପଦବେଳେ ଠିଆ ହୋଇ ପାରିବ । ଅସମ୍ଭବ । ଆଉ ଉଷା···

ମନେ ପଡ଼ିଲା, [illegible] କଥା । ବିନୋଦ ବାବୁ କାଳେ ତାଙ୍କୁ ଏ ବିପଦ ବେଳେ ବଡ଼ କଷ୍ଟ ସାହାଯ୍ୟ କରିଥାନ୍ତେ ବୋଧ ହୁଏ···ଆହା···ସେ କାହାନ୍ତି ? ଦୁଇ ବର୍ଷ ହେଲା କେଉଁଠି ରହି-ଲେଣି ? ଠିକଣା ତ ସେ ଜାଣେ ନାହିଁ···ଘରର ଠିକଣାଟା ମନେ ଅଛି ।

ମନର ସମସ୍ତ ଅବସାଦ, ଅଧୈର୍ଯ୍ୟ ଏବଂ ଅବଶୋଷକୁ କ୍ଷଣ-କାଳ ଚାପି ରଖି ସେ ଚିଠିଟିଏ ଲେଖିବାକୁ ବସିଲା । ଘରକୁ ଆଲୋଡ଼ିତ କରି ସେ ସୁଟ୍‌କେଶରୁ ବାହାର କଲା ବିନୋଦର ଘର ଠିକଣା ।

ହାତ ଥରୁଥାଏ । ମୁଣ୍ଡ ଠିକ୍ ନାହିଁ । ତଥାପି ଲେଖିଲା ।

କଟକ
୨୩ । ୪

ହତଭାଗିନୀର ପ୍ରଣାମ ନେବେ । ଆପଣଙ୍କର ଯେବେ ମୋତେ ଜୀବନରେ ଦେଖିବାକୁ ଇଚ୍ଛାଥାଏ; ଶଠି ପାଇଲା ମାତ୍ରେ ଆମ ଘରକୁ ଆସିବେ । ସର୍ବନାଶ ଉପସ୍ଥିତ । ଜାଣେ ନାଁ, ମୋର ଅନୁମାନ ଅବ୍ୟର୍ଥ କି ନାଁ । ଇତି ।

ସ୍ନେହର ଗ୍ଳାନୀ ‼
ସୁଜାତା

ଶଠିଟି ଲଫାପାରେ ରଖି ସେ ଲେଖିଲା—

ଶ୍ରୀବିନୋଦ ବିହାରୀ ପାଣ୍ଡ
ପୋ: ଅ: ବୈଶ୍ରୀ, କଟକ

## ❋ ପନ୍ଦର ❋

ଶରତ, କ'ଣ ହେଲା ··

ହେବ କ'ଣ···ଭାଇଙ୍କି ସମସ୍ତ ଘଟଣା କହିଲି । ସେ ନିର୍ଭର ଜବାବ ଦେଲେ ଯେ, ଯେ କୌଣସି ମୁହୂର୍ତ୍ତରେ ସେ ପୋଲିସ ସାହାଯ୍ୟ ଦେବାକୁ ପ୍ରସ୍ତୁତ—

ଏତିକି କହି ସେ ମଦନ ଓ ସୁଦାମକୁ ବାହାରକୁ ଡାକିଲା । ଉଭୟେ କ'ଣ ଗୁପଚୁପ କଥାବାର୍ତ୍ତା ହେଲେ ।

ଭୁବନ ଶୋଇଛି—ଜୀବନର ଏ ଅଦ୍ଭୁତ ଅଭିନୟ ତାହାର ଖଣ୍ଡ ଖଣ୍ଡ ହୋଇ ଛିନ୍ନ ହୋଇ ଗଲାଣି । ହାତତକ ତେଜହରା ଆଉ ନାହିଁ । ମନର ପ୍ରସନ୍ନତା ମଉଳି ପଡ଼ିଛି ।

କାଲି କୋର୍ଟକୁ ଯିବାକୁ ପଡ଼ିବ । ଡାକ୍ତର ସାମନ୍ତଙ୍କ ତା' ବିରୁଦ୍ଧରେ କେଶ୍ କରିଛନ୍ତି । କି ସାଙ୍ଘାତିକ ପରିସ୍ଥିତି । ମୁଣ୍ଡ ଉପରେ ପୁଣି ବି. ଏସ୍‌ସିର ଟେଷ୍ଟ ପରୀକ୍ଷା ।

ଜୀବନର ମହା ମହା ସଙ୍କଟ ଏ ମୁହୂର୍ତ୍ତରେ ଆସି ଦେଖା ଦେଇଛି ।

ବାପୁ ବସିଛି । ମୁହଁରେ ହସ ନାହିଁ । ତଥାପି 'orient'ର ନୂଆ ଓ୍ୱାଲ୍ଡପ ମଡ଼େଲ—ଧରିଛି, ଦେଖୁଛି । ପ୍ରାଇଜ ଟଙ୍କା ସବୁ ଆସୁଛି । ଆଗକୁ ସମ୍ବଳ ନାହିଁ—ଓଃ, କି ବିପଦରେ ବାବା···

ସମସ୍ତେ ଚିନ୍ତିତ । ଭୁବନକୁ ଏ ବିପଦରୁ ରକ୍ଷା କରିବାକୁ ହେବ । ନହେଲେ ତାର ମାନସିକ ବିକୃତି ବଢ଼ୁଛି । ତାଙ୍କ ବାପାଙ୍କୁ ଲେଖିବାକୁ ହେବ ।

ବାପୁ କହିଲା, ଭୁବନ ପାଇଁ ସମସ୍ତେ ଲାଗିପଡ଼ । ନ ହେଲେ ସୁଜାତାର ମଧ୍ୟ ଜୀବନ ବିପନ୍ନ ହେବ···ଏଇ ସବୁ ତ Love Marriageର ଟ୍ରାଜେଡ଼ି—ସେଥିପାଇଁ ମୁଁ ଆଦୌ ଏଗୁଡ଼ିକ ପସ କରେ ନା । ନାରୀ ଜାତି, ଉନ୍ମତ୍ତ ଯୌବନ···ରକ୍ତ ମାଂସର କ୍ଷୁଧା, ଆଦର୍ଶ କ'ଣ, ପ୍ରେମ କ'ଣ ?

ହୃଦାନନ୍ଦ ଯୁକ୍ତି କରିବାକୁ ଆରମ୍ଭ କଲା । ଗୋବର୍ଦ୍ଧନ ତା' ସହିତ ତାଳ ଦେଲା ।

ହୃଦାନନ୍ଦ କହିଲା, ଆଉ କ'ଣ ବାପ, ମା ଯୋଉଠି ନାଇଁ ସେଠି ଗୋଟିଏ ଜୁଟେଇ ଦେବେ—ବାହା ହେଇଁ ପଡ଼ିବାଠା କ'ଣ ଭଲ ? ମନ ମିଳୁ ନ ଥିବ । ଭବିଷ୍ୟତକୁ ଖାଲି ଜଞ୍ଜାଳ ଗୁଡ଼ାଏ ରହିଁ ମଣିଷ ହନ୍ତସନ୍ତ ହୋଇ ମରିବ ।

ସୁଦାମ ଓ ମଦନ ଏ ଯୁକ୍ତିକୁ ସମର୍ଥନ କଲେ ।

ବାସୁ ମୁହଁରୁ ଏ ପ୍ରକାର କଥା ଶୁଣି ଭୁବନର ମୁଣ୍ଡ ଗରମ ହୋଇ ଆସିଲା । ସେ କ'ଣ କହିବାକୁ ଯାଉଥିଲା । ହଠାତ୍ ତା'ର ଭୁଣ୍ଡ ଅଟକି ଗଲା । ସେ ଖାଲି ଏତିକି କହିଲା,'Grapes are Sour' —ଅଙ୍ଗୁର ଖଟା ।

ମଦନ କହିଲା, 'ହଁ, ଲାଙ୍ଗୁଳହୀନ ଶୃଗାଳ···ସମସ୍ତେ ହୋ ହୋ ହୋଇ ହସି ଉଠିଲେ । ବାସୁ ରାଗି ଆସିଲା । କହିଲା, ତା' ନୁହେଁ···Love କରି ବାହାଘର ହେଲେ ପଡ଼ିଲେ ହଁ ଥାଏ ସେଥିରେ ନୂତନତା, ହଁ ମାଦକତା, ହଁ ମାଧୁରୀ । ଆଗରୁ ତ ସବୁ କାମ ସରି ଯାଇଛି ମାନେ ସେଇସ ବଜାର କାରବାରରେ । ଏଣିକି ଖାଲି ସମାଜରୁ ଗୋଟାଏ ଲାଇସେନ୍ସ ମିଳିଲେ ହେଲା । ଆଉ, ଦେଖ, ନୂଆ ଲୋକଟିଏ—ବିଲ୍‌କୁଲ ଅଜଣା ଅଶୁଣା···ଷୋଡ଼ଶୀ, ତନ୍ୱୀ କିଶୋରୀ···ତଉଠି ଗତ ଦିନ ହୋମ ନଡ଼ଆଟା ଗୁଞ୍ଜାଗୁଞ୍ଜି କେବେ ମୁହଁ ଟିକିଏ ଦେଖିବାକୁ ଯେ ପ୍ରବଳ ଆକାଂକ୍ଷା ଓ ସ୍ନେହ ଲଜ୍ଜା··· କି ମଧୁର ଓ ନୂତନ ସେ···ଦେହମନରେ ନୂତନ ଶିହରଣ ଖେଳି ଯାଉଥିବ···କିଶୋରୀଟିଏ ରୋମାଞ୍ଚିତ ହୋଇ ଉଠୁଥିବ ଏ ପୁଲକ ସ୍ପର୍ଶ ପାଇଁ···ଏ କେଡ଼େ ମଜା—ଆଉ Love କରି ବିଲକୁଲ ଅତି ଜଣାଶୁଣା ବାସ୍ନା ଗସଗ ମାଲ···

ଶରତ କହିଲା, 'ଅବଶ୍ୟ ବାସୁର କଥାଟା ଠିକ, ତେବେ ସବୁ ସମସ୍ତରେ ଏହା ସତ୍ୟ ନୁହେଁ ।

ନ ହେବ କାହିଁକି ରେ ଶରତ, ଯାହାର ମନ ଯେମିତି, ଫଳ ସେମିତି ।

ତେବେ ଭୁବନର ମନର ଜୋର ତ କମି ନାହିଁ । ବିବାହଟା ହୋଇଗଲେ ଯାଆନ୍ତା ।

"ତୁ ଶରତ୍ Elopment ର ଚେଷ୍ଟା କର । ମୁଁ ସବୁଙ୍କୁ ଯାଇ ବାହାଘରର ସମସ୍ତ ବ୍ୟବସ୍ଥା କରିବି । ଶରତ କହିଲା ଆଜି ଚେଷ୍ଟାରେ ଆମର ତ୍ରୁଟି ନାହିଁ । ଏଣିକି ଭୁବନ ଉପରେ ଦାୟିତ୍ୱ । ସେ ସୁଜାତାଙ୍କୁ ନେଇ ଆସିଲେ ହେଲା ।

ସୁଦାମ କହିଲା, ଏକା ଭଲ ଭୋଜିଟାଏ ହେବ ସେଦିନ । ମୁଁ ଧର୍ମଶାଳାର ମେନେଜରଙ୍କୁ କହିଛି । ସେ ଦିନକୁ ସେ ଦୁଇଟି ରୁମ୍ ଛାଡ଼ି ଦେବେ ।

ବାହାପିଆ ମଦନ କହିଲା, 'ହଁ, ସେଦିନ ରୋଷଟାଏ ଖାସି ଆସିବ । କଣାକଣି କଥା ନୁହେଁ । ଆଜଠାରୁ ଠିକ୍ କରି ରଖ ଖାସି କାହିଁ ଅଛି । ଅଖାରେ ପୂରାଇ ପିଠି ଉପରେ ପକାଇ ଶରତ ଆମର ନେଇ ଆସିବ । ମୁଁ ହଲାଲ କରି ଦେବି ।'

ସମସ୍ତେ ଅଜଣା ଆନନ୍ଦରେ ହସି ଉଠିଲେ । ହୃଦାନନ୍ଦ କହିଲା, ଆଜି କଲେଜର କେତେ କେଉଁଠି Love କରୁଛନ୍ତି ତ ସମସ୍ତଙ୍କୁ ଏକାଠି କରି ବିବାହଟା କରାଇ ଦିଅନ୍ତେ । ଆମେ ହୁଅନ୍ତେ ମାନେ Love marriageର ପୃଷ୍ଠ ପୋଷକ । ଏ ଦୁନିଆଁରେ ଯିଏ Love କରି ବିବାହ କରି ପାରୁ ନ, ପ୍ରତି ବନ୍ଧକର ଧକ୍କା ଖାଇ ଜୀବନକୁ ହାଁ ହତାଶମୟ କରୁଛି, ସେଇମାନଙ୍କୁ ନେଇ ଆମର ସ୍କିମ୍ରୀ ଦେଶ ଭାଗ ଅର୍ଥାତ୍ କଳେ ବଳେ କୌଶଳେ ବିବାହ କରାଇ ଦେଇ ଆମେ ହୁଅନ୍ତେ ଆଦର୍ଶ ମନୁଷ୍ୟ । କ'ଣ କହୁଛୁ ମଦନ—

ମଦନ ସମର୍ଥନ ସ୍ୱରରେ କହିଲା, 'ଜରୁର୍, ଜରୁର୍ ...

ବାପ୍ପୁ କହିଲା, ଅଚ୍ଛା, ମୁଁ ଏକ ନୋଟିସ୍ ଲିଫ୍ କରୁଛି । ତୁମେ-ମାନେ ଶୁଣ ! କଲେଜ ନୋଟିସ୍ ବୋର୍ଡ, ୟୁନିଭରସିଟୀ ନୋଟିସ୍ ବୋର୍ଡ ଓ 'ସମାଜ'ରେ ବାହାରିବ ।

ଭୁବନ ଏତେବେଳେ କହିଲା, 'କ'ଣ ଲେଖିବୁ ଟା କଣ ?

ତା' ନୁହେଁ...ତୋର ପରି ତ କେତେଜଣ ବ୍ୟର୍ଥ ପ୍ରେମିକ ପ୍ରତି ମୁହୂର୍ତ୍ତରେ ଆତ୍ମହତ୍ୟା କରିବାକୁ ବସୁଥିବେ। ପ୍ରେମିକା କେତେ ତ ଭଗ୍ନ ହୃଦୟରେ ନାଷ୍ଟଲା ଶେଷ କରୁଥିବେ। ଆମର ଏଇ ସଂଘ ସେଇ ଦଳର୍ ମନ୍ତ୍ରିତ, ନିଷ୍ଠିତ ପ୍ରେମିକ ଜନତାର ସେବା କରିବ।

ଗୋବର୍ଦ୍ଧନ ଆଗେ ତାଳି ଦେଲା । ସମସ୍ତେ ତାଳ ଦେଇ ସମର୍ଥନ କଲେ।

ମଦନ କହିଲା, 'ଏଭଳ ମିଟିଂକୁ ଯା ବନବିହାରୀକୁ ଡକା ନ ଗଲା ...

ସେ ଏଇକ୍ଷଣି ମୁରୁଙ୍ଗା ବାଟେଇ ଆସି ଉଦଣ୍ଡିବନ କ— ମହାଧୂର୍ତ୍ତ ସେ ...

ସୁଦାମ କହିଲା, ତେବେ ଏ ସଂଘର ନାମଟା କ'ଣ ହେବ ବାସୁ ...

ବାସୁ କହିଲା, ଯାହା ଗୋଟେ ଠିକ୍ କରିଯାଉ।

ଗୋବର୍ଦ୍ଧନ ପ୍ରସ୍ତାବ ଦେଲା, Love topsyfurby redre—ssing ସଂଘ...

ଦଳର ମନକୁ ଏ ନାଁଟା ପାଇଲା ନ।

ହୃଦାନନ୍ଦ କହିଲା, ପ୍ରଜାପତି ଘଣ୍ଟସୂତ୍ର ...

ନାଁ ...ନାଁ ...ଗୋବର୍ଦ୍ଧନ ମନା କଲା।

ଶରତ କହିଲା, ତେବେ ପ୍ରେମିକଙ୍କ ଦୁଃଖ ମୋଚନ ସଂଘ Lover's benificial ସଂଘ।

ହେ...ଏତେବଡ଼ ଲମ୍ବା ନାଁଟା ଭଲ ନୁହେଁ—ସେ ବନାଟା କୁ

ବାପ୍ କହିଲେ, 'ଆଶ୍ଚର୍ଯ୍ୟ ପିଲା ସେ···ତିନି ବରଷ ତଳେ ଭୁବନକୁ ସେ ଅବଶ୍ୟ ଚିହ୍ନି ନ ଥିଲା । ତଥାପି କ'ଣ ତାର ଦେଖି ମୋତେ କହିଲା, ଏ ପିଲାଟା ପ୍ରେମରେ ତ ପଡ଼ିଗଲା । ସର୍ବନାଶ ···ତାହାଙ୍କ ଭୁବନ ଭାଗ୍ୟରେ ଘଟିଛି । କାହିଁ କି ଆସୁନ···ସିଏ

ବାହାରେ କାହାର ଯୋତା ଶବ୍ଦ ଶୁଣାଗଲା । ବଳର ପ୍ରସ୍ତାବ ମଣିରେ ଆସି ଛିଡ଼ା ହେଲା ବନ । ତାକୁ ଦେଖି ବାପୁ କହିଲେ, 'ଅଜା, ତୁ ନ ଆସିଲେ ଏ କ ଏସବୁ କଥା ହୁଏ···ଏତେ ଡେରି କାହିଁକି ହେଲା ।

ସୁଦାମ କହିଲା, ତୋର ତ ସ୍ୱାନ୍ ଆୟୁଷମ—ତୋର କଥା ପଡ଼ୁ ପଡ଼ୁ ଆସି ହାଜର ।

ଶରତ କହିଲା, ଅଜା ··· ବସିଲ । କହିଲ ଏ ସଂଘର ନାଁ ଟା କ'ଣ ···

ବନ ପଚାରିଲା, କ ସଂଘରେ ··· ପ୍ରେମିକ ମାରଣୀ ନାଁ ପ୍ରେମିକା ତାରଣୀ ।

ଗୋବର୍ଦ୍ଧନ ତାଳି ଦେଇ ସମର୍ଥନ କଲା । କହିଲା, ଅଜା, ଚାଲ୍ ବୁଲ ଏ ସଂଘର ନାଁ ହେବ ପ୍ରେମିକ ତାରଣୀ ସଂଘ—

ବନ ପଚାରିଲା, କ'ଣ ଏ ସଂଘର ଜନ୍ମ ଆଜିର ଯୋଜନା ଭିତରୁ ।

ଶରତ କହିଲା, ହୁଁ···

ପୁଣି ପଚାରିଲା, 'ପ୍ରେମିକପ୍ରବର' କୁହତ—ଜନ୍ମ ଦିନରେ ତୁମର କିଛି ଆପତ୍ତି ନାହିଁ ତ ?

ଭୁବନ କହିଲା, ଅଜା, ମୋର ଅବା କ ଆପତ୍ତି । ତୋ ପରି ଅଜାଟାଏ ଯେବେ ମୋତେ ପ୍ରଥମରୁ ମିଳିଥାନ୍ତା, ମୁଁ କ'ଣ ଏତେ ହଇରାଣ ହୋଇଥାନ୍ତି କି ?

ବାସୁ କହିଲା, ଠିକ୍ ସେ କଥା । ବର୍ତ୍ତମାନ ଏ ସଂଘର ନାମଟା କୁହାଯାଉ ।

ବନ କହିଲା, ନାମଟା କହିବା ପୂର୍ବରୁ ମୁଁ କହି ରଖେ ଯେ ବାସୁ ହେଉ ଏ ସଂଘର କୋଷାଧ୍ୟକ୍ଷ । କାରଣ, ସେ Cross word puzzleରୁ ଟଙ୍କା ପାଇ ଏ ସଂଘକୁ ଦେବ । ପ୍ରେମିକ ପ୍ରେମିକାମାନେ ଏ ସଂଘଭୁକ୍ତ ହେବେ ଗୋଟେ ୫୦/ର ଡାକ ଟିକଟ ଦେଇ ।

ସଂଘଟାର ନାମଟା କହ···

ହଁ, ନାଁଟା ଯେମିତି ଚମତ୍କାରିଆ ନାଁ ହୁଏ···ତାର ବିଜ୍ଞାପନ ଦିଆଯିବ । ସୁଦାମ କହିଲା ।

ବନ ଟିକିଏ ଭାବିଲା । କହିଲା, ଆଚ୍ଛା 'କନ୍ଦର୍ପ···ରତି··· ନାଁ···ନାଁ, ସଂଘଟାର ନାଁ ହେବ, ପଞ୍ଚଶର ଇଉନିୟନ୍···ପ୍ରେମିକ ପ୍ରେମିକାଙ୍କର ଦୁଃଖଜ୍ୱାଳାକୁ ନିଭାଇଦେବା ଏହାର କର୍ତ୍ତବ୍ୟ ହେବ ।

କରତାଳିର ସମର୍ଥନ ଆସିଲା । ଭୁବନ କହିଲା, ଦେଖନ୍ତ ଅଜାକୁ···କେତେ ସୁନ୍ଦର ରୋମାଣ୍ଟିକ୍ ନାଁଟା ବାଛିଲା—

ବାସୁ ପଚାରିଲା, 'ଗୋବର୍ଦ୍ଧନ ହେବ ଏହା ସଂପାଦକ । ଆପତ୍ତି କଲା,—କହିଲା, ହେବ ମଦନ···ସମସ୍ତେ ହସି ଉଠିଲେ । ବାହାରୁ କଏ ଆସିବାର ସଙ୍କେତ ଶୁଣିଲା । ସୁଦାମ ଉଠିଗଲା । ଆସି କହିଲା, 'ଭୁବନର ବାବା···

ସେ ଦିନ ଇଉନିୟନର କାର୍ଯ୍ୟ ବିବରଣୀ ଏତିକି । ଭୁବନର ବାବା ଆସି ପହଞ୍ଚିଲେ । ଲଜ୍ଜିତ ଭୁବନ ପ୍ରଣାମ କଲା । ଅନ୍ୟମାନେ ପ୍ରଣାମ ଜଣାଇଲେ । ସୁନ୍ଦରସ୍ୱାଙ୍କ ପଛରେ ତାଙ୍କର ବନ୍ଧୁ ଦିବାକର । ବନ କହିଲା, ଆଜ୍ଞା ବସନ୍ତୁ···

ସେମାନଙ୍କୁ ଦୁଇଟି ଚେୟାର ଦେଇ ବନ ଓ ଶରତ ଭୁବନର ଖଟ ଉପରେ ବସି ପଡ଼ିଲେ । ସୁନ୍ଦରାୟ ସମସ୍ତଙ୍କ ମୁହଁକୁ ପରସ୍ତେ ଚାହିଁଗଲେ । ଅନୁମାନ କଲେ, ଏମାନେ ସମସ୍ତେ ବୋଧହୁଏ ଭୁବନର ଦୁଃଖରେ ଦୁଃଖୀ । କେହି କିଛି କହୁ ନାହାନ୍ତି ।

ସୁନ୍ଦରାୟ କହିଲେ, ବାବୁ ଭୁବନ, ତୁ ମୋର ସୁପୁତ୍ର, ନାଁ କୁପୁତ୍ର, ଏତିକି ମୋତେ କହ—ଭୁବନ ନିରୁତ୍ତର ।

ସୁନ୍ଦରାୟଙ୍କ ଆଖି ଲୁହ ଛଳ ଛଳ, ମୁହଁ ଗମ୍ଭୀର ; ସେ ଉତ୍ତର ଚାହାଁନ୍ତି ।

ଉତ୍ତର ମିଳିଲା ନାହିଁ । ପଞ୍ଚଶର ଭଉନଅନରୁ କୌଣସି ଫକେତ ମଧ୍ୟ ଆସିଲା ନାହିଁ ।

ଜବାବ ଦେ ବାପା···ତୋତେ ଉଚ୍ଚ ଶିକ୍ଷା ପାଇବା ପାଇଁ ପଠାଇଥିଲି । ବହୁତ କିଛି ଉଚ୍ଚ ଶିକ୍ଷା ପାଇଚ ମୁଁ—ଜବାବ ଦେ, ମୋ କଥାର ଜବାବ ଦେ—

ବନ କହିଲା, ଥାଉ ଆଜ୍ଞା···ଆପଣଙ୍କ ପିତା···ଆକାଶ ଘର ଉଦାର ଆଉ ମହାନ···କାହିଁକି ଆଉ ସେ ଗତ କଥାଗୁଡ଼ା ମାପୁଛନ୍ତି, ଯାହାତ ହେବାର ହେଲାଣି···

ସୁନ୍ଦରାୟ କହିଲେ, ତୁଅଁ ଯା କହିଲୁ ସତ କଥା···କିନ୍ତୁ ଏଇ କୁଳାଙ୍ଗାରଟା ସକାଶେ ମୋର ବଂଶର ଗୌରବରେ କଳଙ୍କ ଲାଗିଲା । ଆଶା କରିଥିଲି, ପିଲା ଦୁଇଟିଙ୍କି ଉଚ୍ଚ ଶିକ୍ଷା ଦେବି । ଜଣେ ହେବ ଇଞ୍ଜିନିୟର ଓ ଜଣେ ହେବ ଡାକ୍ତର । ଏ କୁଳାଙ୍ଗାର ମୋର ସେ ଆଶାକୁ ଚୂରମାର କରି ଦେଇଛି । ଗୋଟାଏ ଜାତିହୀନ ନୀଚ ଶ୍ରେଣୀର ଲୋକଟା ସହିତ ସମ୍ବନ୍ଧ ସ୍ଥାପନ କରି ଭୁବନ, ତୁ କ'ଣ କରିଛୁ ଜାଣୁ ? ତୋର ବଂଶର ମାନ ସମ୍ଭ୍ରମରେ ଓ ତୋର ନିଜର ମର୍ଯ୍ୟାଦାରେ କଳଙ୍କ ନିଜେ ଲଗାଇ ଦେଇଛୁ ।

ସୁନ୍ଦରସୁଙ୍କ କଥା ଶୁଣି ଲଏ ତା ମୁଁହକୁ, ସିଏ ଆଁ ମୁହଁକୁ ଚାହିଁଲେ ।

ସୁନ୍ଦରସୁ କହି ଗ୍ଲଲେ, ପାଠ ଶାଠ ପଢ଼ି ତୁମେମାନେ ଯେବେ ଏପରି ଘୃଣ୍ୟ ଓ କୁତ୍ସିତ ବ୍ୟାପାରରେ ନିଜର ଭବିଷ୍ୟତକୁ କଳଙ୍କିତ କର, ତେବେ ଅନ୍ୟମାନେ କଣ ଆପଣମାନଙ୍କୁ ଆଉ ଖାତିର କରିବେ । ତୁ କାଲି ମୋଠାରୁ ଜନ୍ମ । ମୋର ବିନା ଅନୁମତିରେ ତୁ କାହିଁକି ରମେଶବାବୁ ଘରକୁ ଯାଇଥିଲୁ କହତ ?

ସୁନ୍ଦରସୁ ରାଗି ଉଠିଲେ । କହିଲେ, କହ କାହିଁକି ତୁ ସେଠାକୁ ଯାଉ । ଗ୍ଳର ସାମାନ୍ୟ ଗୋଟାଏ ସ୍ତ୍ରୀ ଲୋକ ସକାଶେ ଆଜି ତୁ ତୋର ଜୀବନର ସର୍ବନାଶ କଲୁଣି, ତୋର ବଂଶର ମାନମହତ ଗଲାଣି । କି ହୋ ମହାପାତ୍ରେ, ତୋର ଯେବେ ବିବାହ କରିବାର କଥା ଥିଲା, ତୁ କାହିଁକି ମତେ ନ କହିଲୁ ? ଆରେ, ମାସିକ ୩୦ ହଦନ । ସୁନ୍ଦରସୁ ଚାହିଁଲେ ୩୦ଟା ଷୋଳବର୍ଷୀ ଟୋକୀ ୩୦ ଟି ଧନ ପାଇଁ ସେ ତୋତେ ବାହା ଦେଇ ପାରିବ । ସେ କ୍ଷମତା ଓ ପ୍ରତିପତ୍ତି ସୁନ୍ଦରସୁର ଅଛି । ତୋ ପାଇ କେତେ କୁଳ କନ୍ୟା ଚାହିଁ ବସିଛନ୍ତି । ଆଉ ତୁ···

ସୁର ଟିପିଅଟା ପାଇଁ ଯାଇ ତା'ଘରେ ଅପଦସ୍ତ ହେଉଛୁ । ଆରେ ତତେ ସେ ଡାକ୍ତର ମାଡ଼ ମାରି ଜୋତା ଦେଲା ଶେଷକୁ । ତୋତେ ପୁଣି ଧକ୍କା ମାରି ତା ଫାଟକ ପାର କରାଇ ଦେଲା । ତୁ ସହିଲୁ କିମିତି ସେଠି । ଆତ୍ମହତ୍ୟା କଲୁ ନାହିଁ । ତୋର ଅପମାନ, ତୋ ବଂଶର ଅପମାନ, ପୁଣି ମୋତେ ଦେଖିବାକୁ ପଡ଼ିଲା । ନିର୍ଲଜ, କୁଳାଙ୍ଗାର······

ତାଙ୍କର ମୁହଁ ଗମ୍ଭୀର, ଉଗ୍ର ଓ ଆରକ୍ତ ବର୍ଣ୍ଣ ଧାରଣ କଲା । ଚକ୍ଷୁଦ୍ୱୟ ନାଲି ଓ ସ୍ୱାଧୀନ ହୋଇ ଉଠିଲା । କେହି ସାହସ କଲେ

ନାହିଁ, ଏ ପରିସ୍ଥିତିରେ କ'ଣ କରିବାକୁ ପଡ଼ିବ । ବନ ଠାରି ଦେଲେ ମହାପାତ୍ରଙ୍କୁ···ମହାପାତ୍ରେ ସୁନ୍ଦରାୟଙ୍କୁ କହିଲେ, ଆପଣଙ୍କ ପରି ଲୋକ ଯେତେବେ···

ସୁନ୍ଦରାୟଙ୍କ ତୀବ୍ର ଆକ୍ରୋଶ ଓ ରାଗ ଶେଷରେ ଅଶ୍ରୁରେ ପରିଣତ ହେଲା । ତାଙ୍କର କଣ୍ଠ ରୁଦ୍ଧ ହୋଇ ଆସିଲା । ସେ ଆଉ କିଛି କହି ପାରିଲେ ନାହିଁ । ତଳକୁ ମୁହଁ ପୋତି ଲୁହ ଢାଳିବାକୁ ଲାଗିଲେ ।

ଭୁବନ କାନ୍ଥ ପଟରେ କାନ୍ଦିବାକୁ ଲାଗିଲା । ସେ ବୁଝି ପାରିଲା, ତରୁଣ ସୁଲଭ ପ୍ରଗଲ୍ଭ ପ୍ରବୃତ୍ତିରେ ତାର ଜୀବନରେ ଯାହା ଯାହା ଘଟିଗଲା ସେଥିପାଇଁ ସେ ଦାୟୀ ନୁହେଁ । ଦାୟୀ ଅଦୃଷ୍ଟ ମାତ୍ର ଅଦୃଷ୍ଟର କୁଟିଳ ଗତିରେ ଘଟଣାର ଆବର୍ତ୍ତନ ଗୁଡ଼ିକ ପିତାଙ୍କ ହୃଦୟରେ କି ଦାରୁଣତମ ଆଘାତ ନ ଦେଇଛି ! ! ହୃଦୟର ସମସ୍ତ ଦୁର୍ବଳତାକୁ ସେ ଉପେକ୍ଷା କରି ପାରିଲା ନାହିଁ । ମନେ ମନେ କହିଲା, କଣ କଲି···

ସାଥୀମାନଙ୍କର ଆଖି ଲୁହରେ ଛଳଛଳ ।

ଶରତ କହିଲା, ବାପୁ କହ···

ବାପୁ ନୀରବ !

କେହି ଯେପରି ଭୁବନ ପାଇଁ ତାଙ୍କ ବାପାଙ୍କୁ ଅନୁରୋଧ କରି-ବାକୁ ସାହସ କରିବାକୁ ଅକ୍ଷମ । ବନ ସାହସ କଲା । କହିଲା, ଆଜ୍ଞା, ଯାହା ତ ହେବାର ହେଲାଣି । ବର୍ତ୍ତମାନ କ'ଣ କରାଯାଇ ପାରେ ? ସୁନ୍ଦରାୟ କହିଲେ, କ'ଣ କରାଯିବ । ଖାଲି ତାକୁ ଥରେ ପଚାର । ପୂର୍ବର ସୂର୍ଯ୍ୟ ବରଂ ପଶ୍ଚିମରେ ଉଦୟ ହେବେ, ତଥାପି ସୁନ୍ଦରାୟ କୋର୍ଟକୁ ଯିବ ନାହିଁ, ତା'ର କୁଳାଙ୍ଗାର ପୁଅକୁ ସାହାଯ୍ୟ କରିବାକୁ । ସେ କୁଳାଙ୍ଗାର ଭଲ ବୁଝୁଥିବ ? କାହିଁ-ତାକୁ···ପୁଣି ତ ଖାଲି ବଢ଼ାଇ ଲଢ଼ୁଛି···

ସୁନ୍ଦରାମ୍ବଙ୍କ ଆଖିରୁ ସେତେବେ ସୁଦ୍ଧା ଲୁହଧାର ବନ୍ଦ ହୋଇ ନ ଥାଏ ।

ସେ ପଚାରିଲେ, ଭୁବନ, ବର୍ତ୍ତମାନ କହ, ତୁ ଆଉ ତାକୁ ଚାହିଁବୁ ନାହିଁ···

ଭୁବନ ଆଖି ଉଠାଇଲା । ଭାରାକ୍ରାନ୍ତ ମୁଣ୍ଡଟା ଆଉ ଉପରକୁ ଉଠାଇ ହେଉ ନାହିଁ ।

କହ, କହ,···

ଭୁବନ ନୀରବ ।

ସୁନ୍ଦରାମ୍ବ ତଥାପି ଚଡ଼ା କଣ୍ଠରେ ପଚାରିଲେ, 'କହ, ଜବାବ ଦେ···ଭୁବନ ଏଥର କହିଲା, ବାପା, ମୁଁ ତାକୁ ଜବାବ ଦେଇ ସାରିଛି ।···

ହୁଁ···ତୁ, ତୋର ପୁଣି ଗୋଟାଏ ଜବାବ···ନା, ପୁଣି ଭାବିଚିନ୍ତି କହ । ଯଦି ତୋର ବିବାହ ସେଠାରେ ହୁଏ, ଜାଣିରଖ ସୁନ୍ଦରାମ୍ବର ପୁଅ ତୁ ଆଉ ନୋହୁ···ତେଜ୍ୟପୁତ୍ର କରିଦେବି । ସମସ୍ତ ସଂପତ୍ତିରୁ ବଞ୍ଚିତ ହେବୁ ତୁ—

ଭୁବନ କହି ପକାଇଲା, ସେଥିପାଇଁ ଆପତ୍ତି ନାହିଁ ବାପା—ମୁଁ ମୋର ଜବାବ ରଖିବାକୁ ଚାହେଁ···

ଆଚ୍ଛା···

ସୁନ୍ଦରାମ୍ବ ପୁଣି ରାଗି ଉଠିଲେ । ବନ କହିଲା, ବାପୁ, ସେ ଇଡ଼ିଅଟ୍‌କୁ ଏଠୁ ନେଇଗଲୁ ପଦାକୁ । ଘର ଗୋଟାଏ ଏ ଦେଖେଇଛି ।

ଶରତ ଓ ବାପୁ ଟାଣି ଟାଣି ଭୁବନକୁ ପଦାକୁ ନେଇଗଲେ ।

ସୁନ୍ଦରାମ୍ବ କହିଲେ, ଦେଖିଲତ ମଣ୍ଡାପାଙ୍କେ···

ଏମାନେ ଆଉ ବାପର ପୁଅ ନୁହନ୍ତି···

ମଦନ କହିଲା, ଆଜ୍ଞା, ଛାଡ଼ନ୍ତୁ ସେ କଥା···

କ'ଣ କହୁଛୁ ତୁ ପୁଅରେ—ସେ କଣ ଆଉ ରହିବ ମୋତେ ? ହୃଦୟ ଭିତରଟା ଆଜ ଯାହା ହେଉଛି···ଏ ଭଳି ପୁଅ ମୋର ନ ଥିଲେ କ'ଣ ହୋଇଥାନ୍ତା ?' ସୁନ୍ଦରସୂଙ୍କ କଣ୍ଠରେ ଉତ୍ତେଜନା, ଆବେଗ ଓ କରୁଣ ଝଙ୍କାର ।

ବନ କହିଲା, 'ଅଜ୍ଞା, ଆମ୍ଭମାନଙ୍କୁ ସେ କ'ଣ ଆଉ ରହିବ । ତା' ପାଇଁ ଆପଣଙ୍କ ସହ ଆମର ମାନମହତ ସବୁଯାକ ପଦାରେ ଝକ ସାରିଲାଣି ।

ମହାପାତ୍ରେ, ଶୁଣୁଚ ଏ ସବୁ ଘଟଣାତ ? ବଦୁ ବୋଉକୁ ଆମର ଟିକେ କହିବ । ଆମ ଭୁବନ ପାଇଁ ଏମାନେ ଆମ ଅପେକ୍ଷା ଏଠି କେତେଦୂର କଷ୍ଟ ନ କରୁଛନ୍ତି । ଅଉ କୁଳାଙ୍ଗାର, ଏମାନଙ୍କର ଏବା କ'ଣ ଉପକାର ତୁ କରିବୁ ଜୀବନରେ—

ଆଜ୍ଞା, ଅମର ସେ କଥା ପଶୁରେ କଏ ? ବର୍ତ୍ତମାନ କପଟ ଆମେ ମାନ୍ ପାଇବା—

କହୁଛୁ ପୁଅ, ତାକୁ ସେଠି ବାହା ଦେବା କଥା ? ତା ଏଜନ୍ମରେ ହେବ ନାହିଁ—ସେଇ ଅଲକ୍ଷଣି, ରାଣ୍ଡୀଳୀ ଯା ପାଇଁ ମୋ ବଂଶର ମାନ ମହତ ଗଲା—ସେ ପୁଣି ଯାଇ ମୋର ପୂର୍ବ ପୁରୁଷଙ୍କୁ ପାଣି ଦେବ···ନାଁ···ନାଁ ତା ସୁନ୍ଦର ଦେହାନ୍ତେ ହେବ ନାହିଁ ।

ବନ ଦେଖିଲା, ଉପାୟ ଠିକ୍ ଧରିଛି । ନତ କଣ୍ଠରେ କହିଲା, ନାଁ ଆଜ୍ଞା, ମୁଁ ତ ତାହା କହୁନାହିଁ । ମୁଁ କହୁଛି, ସେ କଣ୍ଢାଙ୍କର ହେଲେ ବୋଲି କ'ଣ ଏତେ ବଡ଼ ହୋଇଗଲେ । ଆପଣଙ୍କୁ ଏ ଅପମାନ ଭୁବନକୁ ଏ ଅପମାନ···ଏ ଅପମାନ କ'ଣ ଆମର ନୁହେଁ ।

ମହାପାତ୍ରେ ଶୁଣ···

ଆଉ ଆପଣ ସମବସ୍ତ ଚେଷ୍ଟା କରୁଛୁ । ଏହାର ପ୍ରତିଶୋଧ ଗ୍ରହଣ ପାଇଁ, ଆପଣଙ୍କୁ ମାନ ଦେବା ପାଇଁ । ମୁଁ ପ୍ରିନ୍ସିପାଲଙ୍କୁ ଆଜରେ ସମସ୍ତ ଘଟଣା ନିଜେ ଯାଇ ସବିଶେଷ ଭାବରେ କହି ଦେଇଛି, ସେ ଜଲ୍ଦି ମାଜିଷ୍ଟ୍ରେଟଙ୍କୁ ଫୋନରେ କହିଦେବେ । କେସ ଫେସ କୁଆଡ଼େ ଉଡ଼ିଯିବ । ଆଉ ଆପଣ ଦେଖିବେ, ସେ କଣ୍ଟ୍ରାକ୍ଟରର ସାତପୁରୁଷ ଆସି ଆପଣଙ୍କ ପାଦ ସଦା ନ ଧରନ୍ତି...

ସୁନ୍ଦରସ୍ୱ ଓ ମହାପାତ୍ରେ ପରସ୍ପର ମୁହଁ ଚାହାଁ ଚାହିଁ ହେଲେ । ବନ କହି ଚାଲିଲା, ଆଉ ତା'ର ଝିଅ, ତାର ବାଁପର ମହତ ଉପରେ । ଢୋଲାବାଜ କରି ଦୁନିଆଁ ଆଗରେ ଚାଲି ଆସିବ ସବୁ ଗୋଷ୍ଠି କାଢ଼ି । ଆପଣଙ୍କ ଘରେ କେତେ ଦାସୀ ପରିବାରୀ ଥିବେ । ତାର ଆସନ ହେବ ସମସ୍ତଙ୍କ ତଳେ...ଦୁନିଆଁ ଦେଖିବ କଣ୍ଟ୍ରାକ୍ଟର...ତାର ଝିଅକୁ ସୁନ୍ଦରସ୍ୱ ପ୍ରତିଶୋଧ ପାଇଁ ନିଜର ଗୁହାଳ ପୋଛିବା କାମରେ ରଖି ପାରନ୍ତି ।

ମହାପାତ୍ରେ କହିଲେ, ହଁ ହଁ...ଠିକ୍ ଠିକ । ଏଭଳି କାମକୁ ଏଇଆ ନ କଲେ ଆମ୍ଭର ମୁଣ୍ଡ ରହିବ ନାହିଁ ।

ସୁନ୍ଦରସ୍ୱଙ୍କ ମୁହଁରେ ନୂତନ ଶିହରଣ ଦେଖା ଦେଲା । ସୁଦାମ ଓ ବ୍ରହ୍ମାନନ୍ଦ ବନର ଆଶ୍ଚର୍ଯ୍ୟ ବୁଦ୍ଧିରେ ଅତି ବିସ୍ମିତ ହୋଇ ଠୋ ଠୋ ହେଲେ ।

ବିସ୍ମୟ ଓ ଆନନ୍ଦ ଶାଣିତ ଚକ୍ଷୁରେ ସୁନ୍ଦରସ୍ୱ ବନବିହାରୀର ଗମ୍ଭୀର ଆକୃତିକୁ କ୍ଷଣକାଳ ପାଇଁ ଅପଲକ ଦୃଷ୍ଟିରେ ଚାହିଁ ରହିଲେ ।

## ✳ ଷୋହଳ ✳

ମୁଁ କହୁଛି, ଏ ଲଗ୍ନଟା ଟିକିଏ ଗଡ଼ାଇ ଦେଲେ ଚଳନ୍ତା ନ—ଝିଅଟା ଝୁରି ଝୁରି ଆସି କଣ୍ଠା ହେଲାଣି ।

ସୁଜାତାର ମା ଏଭଳି କହି ଦେଲେ । ରମେଶ ବାବୁ କହିଲେ, ଦେଖନା, ବିବାହଟା ସରିଗଲେ ତାର ମନର ପରିବର୍ତ୍ତନ ଆସିଯିବ । ଭୁବନ⋯ଅମରେନ୍ଦ୍ର ରାଜବଂଶର ପିଲା । କି ଚେହେରା ସ୍ବାନ ତେହେରା ତାର । ଏମ୍. ଏଲ୍. ପଢ଼ୁଛି । ବାରିଷ୍ଟର ହେବ । ତୁମେ ତ ତାର ଫଟୋ ଦେଖିଚ । ସେଇଥିପାଇଁ ମୁଁ କେତେକେତେ ଆୟୋଜନ ଅବା ନ କରିଛି । ଜବାବ୍ ଦେଇଛି, ନଗଦ ୧୫ହଜାର ଟଙ୍କା ବାଟ ଖରଚ ଦେବି । ଆଉ ଦେଖିବି ସେ ସୁନ୍ଦରସୁ ମହାପାତ୍ରଙ୍କୁ⋯ସେ ମୋର ଜାତି ବାଛୁଥିଲା । କୁଳ ବାଛୁଥିଲା⋯ ଏବେ ଦେଖୁ, ତାରି ଆଗରେ ମୋର ଝିଅ ହେବ ରାଜ୍ୟର ରାଣୀ— ଆଉ ବିବାହ ଦିନ ତାର ପୁଅ ଥିବ ଜେଲ ଭିତରେ⋯ହା ! ହା !

ହଁ, ସତ କଥା ।

ଆଚ୍ଛା, ତୁମେ ସୁଜାତାର ମନଟାକୁ ବଦଳାଇ ଦେଲ ତ ?

ହଁ⋯ସେ କହିଲା, ବାପାଙ୍କର ଅପମାନ କ'ଣ ମୋର ଅପମାନ ନୁହେଁ ?

ହଁ, ସେ ଖୁବ୍ ଭଲ ପିଲା ନାଁ⋯ଶୀଘ୍ର ବୁଝିଗଲା । ନୋହିଲେ ଏବ କାଳର ସୋଉ ସୁଅ ଝିଅ⋯ ଗୁଡ଼ ତାଙ୍କ କଥା ଛାଡ଼, ଯେବେ ଝୁଙ୍କ ଉଠିଛି, ତେବେ ବାପ ମା' କୁଳ ମାନ ସବୁ ଗଲେ କ'ଣ ହେଲା ?

ହଁ ତେବେ ସୁଧା ସୁଜାତା କହୁଛି—ବର୍ତ୍ତମାନ ତାର ବିବାହ କରିବା ଉଚିତ ନୁହେଁ । କଲେଜ ପଢ଼ା ଚଢ଼ିଆଲା···

ତୁମେ କ'ଣ ବୁଝିଚ ସୁର ତୋଇ···ଦାୟିତ୍ୱ ଗଲେ ଗଲା ! ତା'ପରେ ପୁଣି ନୋଇଁର ଚଢ଼ା ପଢ଼ି ଉଷସ୍ପୁ ଦେଖିବା ?

ସୁଜାତାର ବୋଉ କିଛି ନ କହି ନୀରବ ହେଲେ । ରମେଶ ବାବୁ ପଚାରିଲେ, ସୁଜାତା କୁଆଡେ ଗଲା ? ଯିବ କୁଆଡେ଼ ! ତାର ସାଙ୍ଗ ଅଞ୍ଜଳି ଓ ଉଷା ଆସିଥିଲେ ଆମ ଘରକୁ । ମୁଁ ସେମାନଙ୍କୁ କହିଲି, ସୁଜାତାକୁ ଆମର ଟିକେ ବୁଝି ବୁଝି କରିଦିଅ । ସେମାନଙ୍କ ସାଙ୍ଗରେ ସେ ବୁଲି ଯାଇଚି ।

ହଁ···ମୁଁ ନିମନ୍ତ୍ରଣପତ୍ର ଯୋଗାଡରେ ଲାଗିଲି, ଆରେ ରାମା, ତୁ ଭଜରବାବୁଙ୍କୁ ଟିକେ ଡାକି ତ, ଯିବା ଲଛମନ ସ୍ୱାଦ ସୁନା ଦୋକାନକୁ···

× × × ×

ବାଟରେ ଅଞ୍ଜଳି ପଚାରିଲା, ଉଷା, ବର୍ତ୍ତମାନ କର୍ତ୍ତବ୍ୟ···

କର୍ତ୍ତବ୍ୟ ତ ଆଜି ଆରମ୍ଭ···ଏବଂ ଶେଷ । ଶୁଣିଚ ଭୁବନବାବୁ ପୋଲିସ ସାହାଯ୍ୟ ନେଇଛନ୍ତି···ସୁଜାତା, କ'ଣ କହୁ ନାହୁଁ କାହିଁକି ।

ଅଶ୍ରୁ ଛଳ ଛଳ ନେତ୍ରରେ ସୁଜାତା କହିଲା, ଭାଗ୍ୟହୀନ ଜୀବନର କଥା କହିବି କ'ଣ ? କି ଯୋଗରେ ଜନ୍ମ ମୋର ଯେ ଏ ଭୁଲ ହେଲା ନା କି ସେ ଭୁଲ ହେଲିନି । ନିଜର ବଂଶ ଗୌରବ, ମାନମହତ ସବୁ କୁଆଡ଼େ ମୋର ପାଇଁ ଜଳି ପୋଡ଼ିଗଲା ଆଉ ଜୀବନର ସର୍ବସ୍ୱ ବୋଲି ଯାହାଙ୍କୁ ଭାବିନେଲି, ମୋ ସକାଶେ

ତାଙ୍କର ଜୀବନକୁ ଛାରଖାର କରି ପକାଇଲା । ଉଃ ଆଃ, ମୋତେ ଶୀଘ୍ର ମରଣ ଦେଉ···

ଉଷାର ଘର ପାଖେଇଲାଣି । ଅଞ୍ଜଳି କହିଲା, ସେ କଥା ପାଟିରେ ଧରନାଁ—ଭୁବନବାବୁ ଆସିଥିବେ ନାଁ ଉଷା ?

ହଁ ବୋଧହୁଏ ଆସିଥିବେ···

ଉଷା, ଅଞ୍ଜଳି ଓ ସୁଜାତା ଘର ମଧ୍ୟରେ ପ୍ରବେଶ କଲେ । କାହାରି ମନରେ ସ୍ୱସ୍ତି ନାହିଁ । ଅନାଗତ ଆଶଙ୍କାର ଦୂରରେ ଛାୟା ପ୍ରତିବିମ୍ବିତ ହୋଇଛି । ଉଷାର ମା ଓ ଭଉଣୀ, ସୁଜାତାକୁ ଦେଖିଲେ । ସୁଜାତା ତାଙ୍କୁ ନମସ୍କାର କଲା ।

ସୁଜାତାର ଚେହେରା, ଉଷା ଓ ଅଞ୍ଜଳିର ଆଶଙ୍କାକୁଳ ଆଖିକୁ ଦେଖି ଉଷାର ମା ସମସ୍ତ ଘଟଣା ବୁଝିନେଲେ । କହିଲେ, ଭୁବନବାବୁ ଏ ଘରେ ଅଛନ୍ତି···

ଶଙ୍କିତ ପଦରେ ସୁଜାତା ଅନ୍ୟ ରୁମ୍‌କୁ ପ୍ରବେଶ କଲା । ପାଦତଳେ ପ୍ରଣାମ କଲାବେଳେ ଭୁବନର ତରୁଣ ହସ୍ତରେ ତାର ବାହୁ ଦୁଇଟି ଉତ୍ତେଜିତ ହୋଇ ଉଠିଲା । ଆଖିରୁ ଲୁହ ଧାର ଧାର ବୋହି ପଡ଼ିଲା । ଉଷା, ଅଞ୍ଜଳି, ଉଷାର ମା ଓ ସାନ ଭଉଣୀ ଏ ଦୃଶ୍ୟରେ ବିଚଳିତ ଓ ଅଶ୍ରୁଳ ହୋଇ ଉଠିଲେ । ଉଷାର ମା ଆଶୀର୍ବାଦ କଲେ, ଭଗବାନ ତୁମର ମନୋବାଞ୍ଛା ପୂରଣ କରନ୍ତୁ···

ଭୁବନ ଡାକିଲା···ସୁଜାତା !

ନତନେତ୍ରକୁ ଉତ୍ତୋଳିତ କରି ସୁଜାତା ନୀରବ ଓ ଲୋତକ-ସିକ୍ତ ଭାଷାରେ ଉତ୍ତର ଦେଲା ଆଖିରେ ।

ହୁଁ···

ଆଖିରୁ ଲୁହ ଧାର ବହି ନାହିଁ । ସୁଜାତା କହିଲା, କେଉଁ-ଆଡ଼େ...

ସେଉଁଠିକି ମୁଁ ଯିବ ।

ନାଁ ଭୁବନବାବୁ...ତା' ହୋଇ ପାରିବ ନାହିଁ । ମୋର ଜୀବନମଞ୍ଚରେ ଆପଣ ଲାଞ୍ଛନା, ନିର୍ଯ୍ୟାତନା ଓ ଦାରିଦ୍ର୍ୟ ବରଣ କରନ୍ତୁ ନାହିଁ । ଭାଗ୍ୟହୀନା ମୁଁ, ଆପଣଙ୍କର ସର୍ବନାଶ କରି ଦେଇଛି । ସେଥିପାଇଁ ମୋତେ କ୍ଷମା ଦିଅନ୍ତୁ ଏବଂ ଭୁଲିଯାନ୍ତୁ ସୁଜାତାକୁ । ଅତୀତରେ କୌଣସି ଏକ ଇନ୍ଦ୍ରଜାଲ ଖେଳ ପରି ଆପଣ ମୋର ସମସ୍ତ ସ୍ମୃତି ଭୁଲି ଯାଆନ୍ତୁ । ବିବାହ କରନ୍ତୁ । ମୋତେ ନେଇ ନିଜର ଭବିଷ୍ୟତକୁ ପୋଡ଼ିଜାଳି ପାଉଁଶ କରି ଦିଅନ୍ତୁ ନାହିଁ... ମୋ ପାଇଁ ଆପଣଙ୍କ ବଂଶର ମର୍ଯ୍ୟାଦାରେ କଳଙ୍କ ରଖନ୍ତୁ ନାହିଁ । ବିବାହ କରନ୍ତୁ ।

ଏ କ'ଣ କହୁଛ ସୁଜାତା ! ଏତିକି କହି ଭୁବନ ତାର ପାପୁଲି ଦୁଇଟି ଧରି ପକାଇଲା । ଚମକି ପଡ଼ି କହିଲା, ଏ କଣ ତୁମ ଦେହରେ ଜ୍ୱର...

ଶୁଣି ନ ଶୁଣିଲା ପରି ରହିଲା ସୁଜାତା । ଅଞ୍ଜଳି ଓ ଉଷା ତାର ଦେହରେ ହାତ ଦେଲେ ।

ସତେ ତ ଦେହଟାରେ ଏତେ ଉତ୍ତାପ ?

ସୁଜାତା କହିଲା, ମୋରି ପାଇଁ ଆପଣ ନଷ୍ଟକଲେ ଆପଣଙ୍କର ଭବିଷ୍ୟତ । ମୋରି ପାଇଁ ଡାକ୍ତର ସାମନ୍ତରାୟ କ୍ଷତ ବିକ୍ଷତ ହୋଇ ନିର୍ବାଣ ଲଭିଲେ । ଏ ଦୁଇଟି ବଂଶର ଅଭିଶାପ ମୁଁ ନେଇ ପାରିବି । ଏଣିକି ଆପଣଙ୍କ ବିବାହ ପରେ ଅଭିଶାପ ବହନ କରିବି ଆଜି ଏକ

ସ୍ୱବକର···ଙ୍କ ଯୋଗରେ ଜନ୍ମହେଲି···ମୋର ଭାଗ୍ୟରେହିଁ ଘଟିଲା ଏଇସବୁ ଲାଞ୍ଛନା···

ଅବୋଧ ଶିଶୁପରି ସୁଜାତା କାନ୍ଦି ଉଠିଲା । ଉଷା ତାର ଲୁହ ପୋଛି ଦେଲା । ତାର ମା ସୁଜାତାକୁ ପ୍ରବୋଧନା ଦେଇ କହିଲେ, ମାଆ ପରା···ଏ ସବୁ କଥା କହନ୍ତୁ ନାହିଁ···ତୋର ବାଟ ତୁ ଧରିଛୁ । ଦୁନିଆଁ ଗଲେ କେତେ ଥିଲେ କେତେ, ତୋର ସେଥିରେ ଯାଏ ଆସେ କଣ ?

କହିଁ କହିଁ କାନ୍ଦି ଭୁବନ କହିଲା, କଣ କହୁଚ ସୁଜାତା··· ମୁଁ ତୁମକୁ କଥା ଦେଇଛି ସତ୍ୟ କରୁଛି—ଦେହ ମନ ପ୍ରାଣରେ ସୁଜାତା ବ୍ୟତୀତ ମୁଁ ଅନ୍ୟ କାହାରିକି ସ୍ଥାନ ଦେଇନାହିଁ । ମୁଁ ପୁଣି ତୁମକୁ ବା ଭୁଲିଯିବି କପରି ଓ କାହିଁକି ? ତୁମେ ସେ ସବୁ କଥା ଛାଡ । ବାହାରେ ଟାକ୍ସି ଅପେକ୍ଷା କରିଛି—ଆସ···ଚାଲ···

କ୍ଷୀଣ କଣ୍ଠରେ ସୁଜାତା ଉତ୍ତର ଦେଲା, ଥରେ କହିଥିଲି ପରା ଆମର ପ୍ରଣୟର ଇତି ନାହିଁ । କ୍ଷୁଦ୍ର ବୋଲି ଏତେ କାହିଁକି ଏହାକୁ ଧରି ନେଉଛନ୍ତି । ବିବାହ କରନ୍ତୁ । ଦେହର କ୍ଷୁଧା ଧରି ମଣିଷ ବେଶୀଦିନ ଆଦର୍ଶକୁ ସ୍ଥାନଦେଇ ପାରେ ନା···ବିବାହ କରନ୍ତୁ । ସୁଖୀ ହେବେ···

ଉଷା ଓ ଅଞ୍ଜନ କହିଲେନ କଣ୍ଠ । ଅବାକ୍ ହୋଇ ଏ ତା ମୁହଁକୁ ଓ ସେ ତା ମୁହଁକୁ ଚାହିଁଲେ । ଉଷା ପଚାରିଲା, ସୁଜାତା···

ନାଁ ଉଷା ଅପା···ମତେ କଣ୍ଠ କୁହନାହିଁ । ଏତକ କହି ସେ ବିକଳ ଭାବରେ କାନ୍ଦିବାକୁ ଲାଗିଲା ।

କରୁଣ ଆବେଦନରେ ଭୁବନ କହିଲା, ସୁଜାତା, ମନେ ରଖ ଦେହ ମନପ୍ରାଣ ଦେଇ ମୁଁ ତମକୁ ଭଲ ପାଇଛି—ସମାଜର ଆଖିରେ ଆଙ୍ଗୁଠି ମାରି ମୁଁ ତମକୁ ଦେହ ମନ ପ୍ରାଣରେ ମିଶାଇ ଚିର ଆନନ୍ଦ ଉପଭୋଗ କରିବି । ଯିଏ ଗୋଟିଏ ଦାଗ ଧରି ଗଲେ ସେ ଗଲେ, ବଦ୍‌ନାମ ଓ ଅପମାନ—ଭୁବନର କଣ୍ଠରେ ଆଜ ଏକାର ଏ ସବୁ ଅପ୍ରାକୃତ ଭାଷା କାହିଁକି ସୁଜାତା···

ହୃଦୟ ତାର ଭାଙ୍ଗି ଗଲା । ସେ ସୁଜାତା ଆଡ଼କୁ ଚାହିଁ ରହିଲା । କିଛିକ୍ଷଣ ପାଇଁ କେହି ଆଖି ପଲକ ପକାଇ ପାରିଲେ ନାହିଁ । ଭୁବନ ସୁଜାତାର ବାହୁଧରି କହିଲା, ଚାଲ······

ଝାଉଁଳି ଲତାଟି ପରି ସେ ଢଳିଟି ପଡ଼ିଲା ଭୁବନ କୋଳରେ । ଦେହରେ ଉତ୍ତାପ ପୂରି ରହିଛି···ସଂଜ୍ଞା ନାହିଁ, ଚେତନା ନାହିଁ ।

କ'ଣ ହେଲା ବୋଲି ଉଷା ଓ ଅଞ୍ଜଳି କାନ୍ଦି ଉଠିଲେ । କ୍ଷଣକ ପାଇଁ ଭୁବନ କିଂକର୍ତ୍ତବ୍ୟବିମୂଢ଼ ହୋଇ ଠିଆ ହେଲା । ତାକୁ କିଛି ଦେଖାଗଲା ନାହିଁ । ମୁଣ୍ଡ ଉପରେ ଶତ ସହସ୍ର ହିମାଳୟ ଭାଙ୍ଗି ପଡ଼ିଲା । ଧମନୀର ସ୍ପନ୍ଦନ ସବୁ ଯେମିତି ରୁଦ୍ଧ ହୋଇ ଆସିଲା ।

ଧୀରେ ଧୀରେ ସେ ସୁଜାତାକୁ ଉଠାଇ ନେଇ ଚାଲିଲା ଟ୍ୟାକ୍ସି ପାଖକୁ, କାନ୍ଦ କାନ୍ଦ ପଛରେ ଉଷା, ତାର ମା ଓ ଅଞ୍ଜଳି··· । ଡ୍ରାଇଭର ଦରଜା ଖୋଲି ଦେଲା । ସୁଜାତାକୁ କୋଳରେ ଧରି ଭୁବନ ବସିଲା । ଉଷା ଓ ଅଞ୍ଜଳି ମଧ୍ୟ ସାଙ୍ଗେ ସାଙ୍ଗେ ବସିଲେ

କାହାର ତୁଣ୍ଡରେ ଭାଷା ନାହିଁ ।

ହଠାତ୍ ଭୁବନ କମ୍ପିଲା, ଟଳିଉଠ ମେଡ଼ିକାଲ...

ଷ୍ଟାର୍ଟ୍ ମାରି ଅଷ୍ଟିନ୍ଟା ଛୁଟି ଚାଲିଲା ମେନରୋଡ଼ରେ ମେଡ଼ି-କାଲ ଅଭିମୁଖେ......

ଠିକ ସେତିକବେଳେ ପାଖ ଦେଇ ଚାଲି ଯାଉଥିଲା ବିନୋଦ—ନଂ୧୩ ନମ୍ବର ସାଇକେଲ ରିକ୍ସାରେ......



# ପ୍ରିୟଜନମାନଙ୍କୁ ଉପହାର
## ଦେବାଭଳି ବହି

**ଉପନ୍ୟାସ**

- ପରବାସୀ — ଟ ୧୫
- ବଦେଶ ଭାତୃତା — ଟ ୧୫
- ବନ୍ଦି ଓ ବନ୍ଧ ଫୁଲ — ଟ ୧।
- ମନର ଯେତେ ଆଶା — ଟ ୧୪
- ନନ ଝରଣୀ କାନ୍ଦେ — ଟ ୨୯
- ପ୍ରିୟା ଓ ପରକୀୟା — ଟ ୨୫
- ଭୁଲି ଯାଅ — ଟ ୧।
- ଲଭ୍ ମ୍ୟାରେଜ — ଟ ୨୯

**ଗଳ୍ପ ସଂଗ୍ରହ**

- ଗାଁମାଟି ଡାକେ — ଟ ୧୯
- ପକ୍ଷୀ ଧନ୍ଦେ — ଟ ୧୯
- ନର୍ଦ୍ଦା ସରଗର ଶାନ୍ତି — ଟ ୧୫

**କବିତା**

- ପ୍ରେମପତ୍ର — ଟ ୦.୫୦
- ଭୁଲ୍ ନୁହେଁ କି — ଟ ୦.୬

**ଡିଟେକ୍ଟିଭ**

- ସର୍ବହରାର ଅନ୍ଧକାର — ଟ ୧୯
- ଜମ୍ବୁଦ୍ୱୀପ ରହସ୍ୟ — ଟ ୨୯

ପ୍ରାପ୍ତିସ୍ଥାନ :

**ପ୍ରକାଶ ବୁକ୍ ଷ୍ଟୋର**
**କଲେଜ ରୋଡ୍, କଟକ-୩**

ମୁଦ୍ରାକର ପ୍ରକାଶ : ମନମୋହନ ପ୍ରେସ, କଟକ-୨